କବିରାଜ ଜୟଦେବ ପ୍ରଣୀତମ୍

# ଶ୍ରୀମଦ୍ ରାମ ଗୀତଗୋବିନ୍ଦମ୍

ସମ୍ପାଦନା

ଶ୍ରୀ ହଂସନାଥ ସାହୁ

ପ୍ରକାଶକ

ପ୍ରାଚୀ ସଂସ୍କୃତି ଗବେଷଣା କେନ୍ଦ୍ର

କବିରାଜ ଜୟଦେବ ପ୍ରଣୀତମ୍

# ଶ୍ରୀମଦ୍ ରାମ ଗୀତଗୋବିନ୍ଦମ୍

ସମ୍ପାଦନା :

**ଶ୍ରୀ ହଂସନାଥ ସାହୁ**

ପ୍ରାଚୀ ସଂସ୍କୃତି ଗବେଷକ

ଗ୍ରାମ/ପୋ : ଅଡ଼ଶପୁର, ଥାନା-ଓଲଟପୁର

ଜି-କଟକ, ପିନ୍ - ୭୫୪୦୧୧

ମୋ : ୯୯୩୭୯୩୮୮୪୮

ପ୍ରକାଶକ :

**ପ୍ରାଚୀ ସଂସ୍କୃତି ଗବେଷଣା କେନ୍ଦ୍ର**



**ପ୍ରଥମ ପ୍ରକାଶ-୨୦୧୬**

ମୁଦ୍ରଣ :

**ରମଣ ପ୍ରିଟିଙ୍ଗ୍ ଆଣ୍ଡ ଗ୍ରାଫିକ୍ସ**

୪୫୧/୧୮୦୨, ନୂଆସାହି, ନୟାପଲ୍ଲୀ, ଭୁବନେଶ୍ୱର

ମୋ : ୯୬୫୮୨୨୩୬୮୭

ସହୃଦୟତା :

**ଅମରେଶ୍ୱର ସାଂସ୍କୃତିକ ଉନ୍ନୟନ ପରିଷଦ,**

ଅମରେଶ୍ୱର

**ମଧୁକରୀ : ଟ ୧୦୦/- (ଏକଶତ ଟଙ୍କା ମାତ୍ର)**

# ସୂଚୀପତ୍ର







# ଦୁଇ ପଦ

ମୁଁ ଜଣେ ସାଧକ ଓ ଶ୍ରୀ ଜଗନ୍ନାଥଙ୍କ ଅନୁରାଗୀ । ପିଲାଦିନରୁ ବିଶେଷକରି ବିଦ୍ୟାଳୟ ଛାତ୍ରାବସ୍ଥାରୁ ଯେତେବେଳେ ଓଡିଶା ବାହାରକୁ ଯିବା ଆରମ୍ଭ କଲି, ସେତେବେଳେ ଓଡିଶା କହିଲେ ଓଡିଶା ବାହାରର ଲୋକେ ହଠାତ୍ ବୁଝିପାରୁ ନଥିଲେ, ବରଂ ଶ୍ରୀ ଜଗନ୍ନାଥଙ୍କ ନାମ ନେଲେ, ସେମାନେ ଓଡିଶା ବିଷୟରେ ଜାଣୁଥିଲେ । ଶ୍ରୀଜଗନ୍ନାଥଙ୍କ ନାମ ଓ ତାଙ୍କ ପ୍ରତି ପ୍ରେମ ପ୍ରତ୍ୟେକ ଓଡିଆଙ୍କର ପ୍ରାଣ ସ୍ପନ୍ଦନ । ପରବର୍ତ୍ତୀ କାଳରେ ଓଡିଶା ବାହାରେ, ଭାରତବର୍ଷ କାହିଁକି ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ସମଗ୍ର ବିଶ୍ୱରେ ପରିବ୍ରାଜକ ସନ୍ୟାସୀ ଭାବରେ ସମୟ ଅତିବାହିତ କଲାବେଳେ ମଧ୍ୟ ଠିକ୍ ସେହି ଅବସ୍ଥା । ଏକଥା ଏଠାରେ ଉଲ୍ଲେଖ କରିଲାବେଳକୁ ମନ ମଧ୍ୟରେ ଶ୍ରୀଜଗନ୍ନାଥ ମହାପ୍ରଭୁ, ଶ୍ରୀଜୟଦେବ, ଉତ୍କଳୀୟ ଆଧ୍ୟାତ୍ମିକ ପରଂପରା, ଶୈବ, ଶାକ୍ତ ଓ ବୈଷ୍ଣବ ସାଧନାଧାରାର ଅପୂର୍ବ ମିଳନ ଓ ସମନ୍ୱୟ ଏବଂ ଏହି ଭୂଖଣ୍ଡର ସାଂସ୍କୃତିକ, ଐତିହାସିକ, ଧାର୍ମିକ ଓ ଆଧ୍ୟାତ୍ମିକ ବିଭବ ମଧ୍ୟ ଉଙ୍କି ମାରୁଛି ।

ଦୁଃଖ ଓ ପରିତାପର ବିଷୟ, ପୁରାଣମାନଙ୍କରେ ପ୍ରଶଂସାମୁଖର ଏହି ଭୂଖଣ୍ଡ । ଏହାର ସମଗ୍ର ବିଶ୍ୱକୁ ଅବଦାନ - ଏଇ ଓଡିଶା ବା ଓଡିଆ ଜାତି ତାର ପ୍ରାଣରେ ନିଜ ଭାଷା, ସାହିତ୍ୟ, ସଂସ୍କୃତି, ବେଶଭୂଷା, ଖାଦ୍ୟପାନୀୟ ଓ ସର୍ବୋପରି ବହୁ ଭାବରେ ଏହି ଜାତିର ସ୍ୱାତନ୍ତ୍ର୍ୟ ଓ ଐତିହ୍ୟକୁ ନେଇ ସ୍ୱାଭିମାନୀ ହେବା ଓ ଏହାର ଧୂଳିଧୂସରିତ ମୁଖକୁ ପୁଣି ଗୌରବ ମଣ୍ଡିତ କରିବା ପାଇଁ ଟିକେ ପ୍ରଯତ୍ନ କରିବା ହେବା, ଏପରି ବ୍ୟାକୁଳତା ଦେଖାଯାଉ ନାହିଁ ।

ତଥାପି କେତେ ମନୀଷୀ, ଚିନ୍ତାନାୟକ ଓ ଉତ୍କଳ ଜନନୀଙ୍କ ସୁପୁତ୍ର ଉଦ୍ୟମ ଜାରି ରଖିଛନ୍ତି ବିଭିନ୍ନ କ୍ଷେତ୍ରରେ, ଏହା ମଧ୍ୟ ପ୍ରଶଂସନୀୟ । ଛୋଟିଆ କଥା ଶ୍ରୀ

ଜଗନ୍ନାଥ ଯେମିତି ଆମ ଠାକୁର, ତାଙ୍କ ସହିତ ସଂପୂର୍ଣ୍ଣ ସମର୍ପିତ ଓ ତାଙ୍କର ପ୍ରିୟତମ ସେବକ ଶ୍ରୀ ଜୟଦେବ ମଧ୍ୟ ଓଡିଆ ଜାତିର ଅନ୍ୟ ଏକ ପରିଚୟ, ଏକଥା ଆମେ ଭୁଲିଯାଇଛେ ।

ଶ୍ରୀଜୟଦେବଙ୍କୁ ଓ ତାଙ୍କ କୃତିକୁ ଅନ୍ୟ ରାଜ୍ୟର ଲୋକେ ଅପହରଣ କରି ନେଉଥିବା ବେଳେ ଯେଉଁ ମନୀଷୀମାନଙ୍କ ଉଦ୍ୟମ ଫଳରେ କବିରାଜ ଜୟଦେବ ଯେ କେବଳ ଓଡିଆ ନୁହନ୍ତି, ସେ ଶ୍ରୀଜଗନ୍ନାଥ ସଂସ୍କୃତିର ଜଣେ ଆଦର୍ଶ ପ୍ରବକ୍ତା – ଏହା ଏବେ ସୁପ୍ରତିଷ୍ଠିତ ।

ଶ୍ରୀଜୟଦେବଙ୍କ ସାହିତ୍ୟ କୃତି ଉପରେ ନାନା ମତ ଓ ବାଦ ଏ ପର୍ଯ୍ୟନ୍ତ ଏକ ସର୍ବସମ୍ମତ ସିଦ୍ଧାନ୍ତ ଆଣିପାରିନାହିଁ । ତାଙ୍କ ନାମରେ ରଚିତ ଓ ପ୍ରାପ୍ତ ଏକ ସୁନ୍ଦର କୃତି, ଶ୍ରୀମଦ୍ ରାମ ଗୀତଗୋବିନ୍ଦମ୍, ଗ୍ରନ୍ଥ ଦର୍ଶନ ଓ ବିହଙ୍ଗାବଲୋକନ କରିବାର ସୁଯୋଗ ମିଳିଲା ପ୍ରାଚୀ ସଂସ୍କୃତି ଗବେଷକ ଶ୍ରୀଯୁକ୍ତ ହଂସନାଥ ସାହୁଙ୍କ ଠାରୁ ।

ଠିକ୍ ଶ୍ରୀଗୀତଗୋବିନ୍ଦର ସୁନ୍ଦର ପ୍ରତିଫଳନ - ଏହି ଗ୍ରନ୍ଥରେ ଭକ୍ତି ଭାବ, ରାଗ, ତାଳ, ଶବ୍ଦବିନ୍ୟାସ ଓ ଛନ୍ଦୋବଦ୍ଧ ସୃଷ୍ଟି ଶ୍ରୀମଦ୍ ରାମ ଗୀତଗୋବିନ୍ଦ । ଶ୍ରୀରାମଙ୍କ ଅଭିନବ ଲୀଳା – ମାଧୁର୍ଯ୍ୟରେ ଗୁଂଜରିତ ଶ୍ରୀରାମ ଗୀତଗୋବିନ୍ଦ ।

ଶ୍ରୀ ଜଗନ୍ନାଥ ସର୍ବମୟ – ଶ୍ରୀକୃଷ୍ଣ, ଶ୍ରୀରାମ ଏବଂ ସମସ୍ତ ଅବତାରଙ୍କ ଉତ୍ସ । ଶ୍ରୀ ଜଗନ୍ନାଥଙ୍କ ମହିମା ଗାନରେ ଉଭୟ ଗୀତଗୋବିନ୍ଦ ମୁଖରିତ । ଶ୍ରୀଜଗନ୍ନାଥ, ଶ୍ରୀଜୟଦେବ ଓ ତାଙ୍କର କୃତି ତଥା ତାଙ୍କର ପ୍ରାଚୀ ଉପତ୍ୟକା ସହ ସମ୍ବନ୍ଧ ଉପରେ ଅଧିକ ଗବେଷଣା ଓ ଆଲୋକପାତ ଆବଶ୍ୟକ ।

ଅତୀତର ଭିତ୍ତିଭୂମି ଉପରେ ଆମର ସ୍ଥିତି ଓ ଭବିଷ୍ୟତର ସ୍ୱପ୍ନ । ଆମେ ଅତୀତକୁ ସିଂହାବଲୋକନ କରି ଭବିଷ୍ୟତକୁ ଅଗ୍ରଗାମୀ ହେବା ଏବଂ ନିଜ ସଂସ୍କୃତି ଓ ପରଂପରାକୁ ପ୍ରାଣବନ୍ତ ଓ ସମୃଦ୍ଧ କରିବା ।

ଏହି ପୁସ୍ତକ ପ୍ରକାଶନରେ ଏକ ଅଭିନବ ବିତର୍କ ସୃଷ୍ଟି କରିଥିବା ପ୍ରାଚୀ ସଂସ୍କୃତି ଗବେଷକ ଶ୍ରୀଯୁକ୍ତ ହଂସନାଥ ସାହୁଙ୍କୁ ଆମର କୃତଜ୍ଞତା ।

**ପରମହଂସ ପ୍ରଜ୍ଞାନାନନ୍ଦ**

# ଅଭିମତ

ଶ୍ରୀ ଜୟଦେବଙ୍କ ପ୍ରଣୀତ ଗୀତଗୋବିନ୍ଦ ବିଶ୍ୱବିଶ୍ରୁତ । ଏହା ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ପ୍ରେମ ସମ୍ବଳିତ ଏକ ଗୀତିକାବ୍ୟ । ଏଥିରେ ଶୃଙ୍ଗାର ରସ ପରିବେଷିତ ହେଇଅଛି । ଗୀତଗୋବିନ୍ଦର ବିଷୟବସ୍ତୁ ଅତ୍ୟନ୍ତ ପ୍ରାଚୀନ ହୋଇଥିଲେ ହେଁ ଭାଷା ଓ ଶୈଳୀ ପରବର୍ତ୍ତି କାଳୀନ । ଯେତେବେଳେ ସଂସ୍କୃତଭାଷାରେ କାବ୍ୟ ପ୍ରଣୟନ ଧାରା ଶିଥିଳ ହୋଇ ଆସୁଛି ଆଞ୍ଚଳିକ ଭାଷାରେ ଗ୍ରନ୍ଥ ପ୍ରଣୟନ ପ୍ରତି ଜନମାନସ ଅଧିକ ଆକର୍ଷିତ ହୋଇଆସୁଛି ଠିକ୍ ସେତିକିବେଳେ ଭକ୍ତ କବି ଜୟଦେବ ଓଡ଼ିଆ ଭାଷାର ଅତ୍ୟନ୍ତ ନିକଟବର୍ତ୍ତୀ ସଂସ୍କୃତ ପଦାବଳୀ ପ୍ରୟୋଗରେ ଗୀତିଗୋବିନ୍ଦ ରଚନା କରିଛନ୍ତି । ଏଥିଯୋଗୁ ଗୀତଗୋବିନ୍ଦର ବିଷୟ ବସ୍ତୁର ବୈଶିଷ୍ଟ୍ୟ ଅପେକ୍ଷା ଭାଷା ଓ ଶୈଳୀର ସ୍ୱରୂପାଧିକ୍ୟ ପ୍ରକଟିତ ହୋଇଥିବା ପରି ମନେ ହୁଏ ।

ପକ୍ଷାନ୍ତରେ ''ଶ୍ରୀମଦ୍‌ରାମ ଗୀତଗୋବିନ୍ଦ'' ଗୀତଗୋବିନ୍ଦର ରଚନା ପରିପାଟୀର ଅନୁକରଣରେ ପ୍ରଣୀତ । ଶ୍ରୀରାମ-ସୀତାଙ୍କ ମଧ୍ୟରେ ଥିବା ଶାନ୍ତ ରସ ଭିତ୍ତିକ ପ୍ରେମର ଶୃଙ୍ଗାର ରସ ଭିତ୍ତିକ ପରକୀୟା ପ୍ରେମ ଆଡ଼କୁ ଆକର୍ଷିତ କରିବା ପାଇଁ ଚେଷ୍ଟା କରାଯାଇଅଛି । ଗୀତଗୋବିନ୍ଦର ପଦାବଳୀ ଶ୍ରୀମଦ୍‌ରାମଗୀତଗୋବିନ୍ଦର ବହୁ ଅଂଶରେ ଗାତ୍ର ମଣ୍ଡନ କରିଛି । ପାଠକଙ୍କ ହୃଦୟରେ ରାଧା-କୃଷ୍ଣଙ୍କର ଶୃଙ୍ଗାର ରସ ଭିତ୍ତିକ ଲୀଳାର ମାଧୁର୍ଯ୍ୟ ଶ୍ରୀରାମ ଓ ସୀତାଙ୍କ ମଧ୍ୟରେ ହଠାତ୍ ଆସି ପାରୁ ନାହିଁ । ତଥାପି ସେହି ବିଷୟ ବସ୍ତୁର ପଟାନ୍ତର ଘଟିଛି । କିନ୍ତୁ ଗୀତଗୋବିନ୍ଦର ସ୍ପର୍ଶରେ ପଦାବଳୀର ସାମଞ୍ଜସ୍ୟ ଶୃଙ୍ଗାର ରସାଭାସ କରୁଅଛି ।

ଐତିହାସିକ ଓ ସାହିତ୍ୟ ସମାଲୋଚକମାନେ ଶ୍ରୀମଦ୍‌ରାମଗୀତଗୋବିନ୍ଦ ଗ୍ରନ୍ଥରେ ପ୍ରଣେତାଙ୍କ ସମ୍ବନ୍ଧରେ ଅନୁସନ୍ଧାନ କରିବାର ଆବଶ୍ୟକତା ରହିଛି । ସଂପାଦକ ଶ୍ରୀଯୁକ୍ତ

ହଂସନାଥ ସାହୁ (ମୋର ପୂଜାସ୍ପଦ ଶିକ୍ଷକ) ମହୋଦୟ ଏଥି ନିମନ୍ତେ ଶ୍ରମ ସ୍ୱୀକାର କରି ଉକ୍ତ ଗ୍ରନ୍ଥର ଲେଖକଙ୍କ ପରିଚିତି, ଗ୍ରନ୍ଥୋକ୍ତ ବିଷୟବସ୍ତୁର ପ୍ରତ୍ନତାତ୍ତ୍ୱିକ ପ୍ରାମାଣିକତା ସହ ସାହିତ୍ୟିକ ଓ ଐତିହାସିକ ପର୍ଯ୍ୟାଲୋଚନା କରିଛନ୍ତି । ପରବର୍ତ୍ତୀ ଗବେଷକମାନଙ୍କ ପାଇଁ ଏହା ବସ୍ତୁତଃ ଭିତ୍ତି ପ୍ରସ୍ତୁତ କରିଛି । ଏହାର ମୂଳ ସହ ସଂସ୍କୃତ ଟୀକା ମଧ୍ୟ ଶାସ୍ତ୍ରୀୟ ପରମ୍ପରାକୁ ଯେପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ କରିଛି ଶ୍ରୀଯୁକ୍ତ ସାହୁଙ୍କର ସମାଲୋଚନା ସେହିପରି ଗଭୀର ଆବର୍ତ୍ତ ସୃଷ୍ଟି କରିଛି । ଆଶା କରୁଛି ପାଠକମଣ୍ଡଳୀ ଏହାର ଯଥାର୍ଥତା ଅନୁଭବ କରିବେ ।

॥ ଇତି ॥

**ପ୍ରଫେସର (ଡଃ) ବ୍ରଜକିଶୋର ସ୍ୱାଇଁ**
ଅବସରପ୍ରାପ୍ତ ପ୍ରଫେସର
ସ୍ନାତକୋତ୍ତର ଧର୍ମଶାସ୍ତ୍ର ବିଭାଗ
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ
ଶ୍ରୀବିହାର, ପୁରୀ





# ଓଡିଶାର ରାମ ସଂସ୍କୃତି :

## "ଶ୍ରୀଜୟଦେବକୃତ ଶ୍ରୀମଦ୍‌ରାମ ଗୀତଗୋବିନ୍ଦ"

## ଓ

## ବରାହୀ ମନ୍ଦିରର ପ୍ରସ୍ତର ଖୋଦିତ ରାମାୟଣ ଚିତ୍ରାବଳୀ- ଏକ ପ୍ରସଙ୍ଗ

ଶ୍ରୀରାମ ଭଗବାନ୍ ବିଷ୍ଣୁଙ୍କର ସପ୍ତମ ଅବତାର ।କୃଷ୍ଣଙ୍କ ସହ ରାମ ମଧ୍ୟ ହିନ୍ଦୁ ଧାର୍ମିକ ଜୀବନର ଏକ ବିଶିଷ୍ଟ ସ୍ଥାନ ଅଧିକାର କରଛନ୍ତି । ରାମଭକ୍ତମାନଙ୍କ ପାଇଁ ଶ୍ରୀରାମ ହେଇଛନ୍ତି ନିଜେ ଅବତାରୀ । ଭଗବାନ ବିଷ୍ଣୁ ତ୍ରେତାଯୁଗରେ ଦଶରଥ ନନ୍ଦନ ରାମଚନ୍ଦ୍ର ଭାବରେ ଜନ୍ମଲାଭ କରି ଅନ୍ୟ ଅବତାରମାନଙ୍କ ପରି ପୃଥିବୀରୁ ଦୁଷ୍ଟମାନଙ୍କୁ ନାଶ କରି ସନ୍ଥମାନଙ୍କର ସୁରକ୍ଷା କରିଥିଲେ । ହିନ୍ଦୁ ଦେବଦେବୀ ମାନଙ୍କର ବିଭିନ୍ନ ଅବତାର ଅଛି । ମାତ୍ର ସମସ୍ତ ଅବତାରମାନଙ୍କ ମଧ୍ୟରୁ ରାମ ଓ କୃଷ୍ଣ - ଏ ଦୁଇ ଅବତାର ଖୁବ ଲୋକପ୍ରିୟ । ଏମାନଙ୍କୁ ଆଧାର କରି ଭାରତରେ ସଂସ୍କୃତ ଭାଷାରେ ଦୁଇଟି ଅନବଦ୍ୟ ଓ ବିଶାଳ ମହାକାବ୍ୟ – ରାମାୟଣ ଓ ମହାଭାରତ ରଚନା ହୋଇଛି । ଭାରତର ଆଂଚଳିକ ଭାଷାରେ ମଧ ଏ ଦୁଇ ମହାକାବ୍ୟକୁ ଆଧାର କରି କବିମାନେ ବିଭିନ୍ନ ସମୟରେ ଶହ ଶହ ରାମାୟଣ ଓ ମହାଭାରତ ରଚନା କରି ଯାଇଛନ୍ତି । ସମଗ୍ର ଭାରତବର୍ଷର ଧାର୍ମିକ ଓ ସାହିତ୍ୟିକ ପରିବେଶକୁ ଶହ ଶହ ବର୍ଷଧରି ଏ ଦୁଇ ମହାକାବ୍ୟ ଏମାନଙ୍କର ଚରିତ୍ର ଓ ବଖାଣ ଚାତୁର୍ଯ୍ୟ ଦ୍ୱାରା ପ୍ରଭାବିତ କରିଛନ୍ତି । ଆଗାମୀ ଶହ ଶହ ବର୍ଷ ମଧ ଏହି ଅବସ୍ଥାର ପରିବର୍ତ୍ତନ ହେବ ନାହିଁ ।

ଦୁଇ ଅବତାରଙ୍କ ବ୍ୟକ୍ତିତ୍ୱ ଭିନ୍ନ ଭିନ୍ନ । ରାମଚନ୍ଦ୍ର ଧାର୍ମିକ ଓ ସାମାଜିକ ପରଂପରା ମାନଙ୍କର ଦୃଢ ଆଦର୍ଶ ଥିବାବେଳେ କୃଷ୍ଣ ବହୁ ପରଂପରକୁ ଭଙ୍ଗ କରିବାକୁ ଦ୍ୱିଧାବୋଧ କରିନାହାନ୍ତି । ବରଂ ସେ ନୂତନ ପରଂପରାମାନ ସୃଷ୍ଟି କରିଛନ୍ତି । ରାମ ନିଜେ ବ୍ୟକ୍ତିଗତ ଜୀବନରେ ପରଂପରା ଓ ସାମାଜିକ ମୂଲ୍ୟବୋଧ ମାନଙ୍କର ଜୀବନ୍ତ

ପ୍ରତିମୂର୍ତ୍ତି ଥିଲାବେଳେ, କୃଷ୍ଣ ଥିଲେ ଚତୁର, କୌଶଳୀ ଓ ବିସ୍ମୟ ବିଭୂତିର ଅଧିକାରୀ । ମାତ୍ର ଉଭୟଙ୍କର ଉଦ୍ଦେଶ୍ୟ ଥିଲା ସମାନ – ନ୍ୟାୟର ପ୍ରତିଷ୍ଠା, ସତ୍ୟର ପ୍ରତିଷ୍ଠା ।

ଓଡିଶାରେ ରାମ ଓ କୃଷ୍ଣଙ୍କ ଉପାସନା ବହୁ ପ୍ରାଚୀନ ଓ ଲୋକପ୍ରିୟ । ଦୁହେଁ ବିଷ୍ଣୁଙ୍କର ଅଂଶାବତାର ଥିବାରୁ ଏମାନଙ୍କର ଭକ୍ତମାନେ ବୈଷ୍ଣବ ଅଟନ୍ତି ଓ ସମଧର୍ମୀ ମଧ୍ୟ । ଅତି ପୁରାତନ କାଳରୁ ରାମ ଓ କୃଷ୍ଣ ଓଡିଶାରେ ପୂଜା ପାଇଆସୁଛନ୍ତି । ବହୁ ଧାର୍ମିକ ପୀଠମାନ ଏମାନଙ୍କ ପାଇଁ ପ୍ରସିଦ୍ଧ । ଶ୍ରୀ ଜଗନ୍ନାଥଙ୍କ ସ୍ୱରୂପରେ ସବୁଠାକୁର ବିଦ୍ୟମାନ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ । ରାମ ଓ କୃଷ୍ଣଙ୍କର ପ୍ରାଧାନ୍ୟ ଦୃଷ୍ଟିରୁ ଏମାନଙ୍କୁ ହିନ୍ଦୁମାନେ ବିଶେଷ ଭାବରେ ପୂଜା ଅର୍ଚ୍ଚନା କରିଥାନ୍ତି । ଜଗନ୍ନାଥ ଧର୍ମର ଲୋକପ୍ରିୟତାର ବିଶାଳତାରେ ମଧ୍ୟ ଓଡିଶାରେ ରାମପୂଜା ତାର ସ୍ୱତନ୍ତ୍ର ମର୍ଯ୍ୟାଦା ରକ୍ଷା କରିବାରେ ସକ୍ଷମ ହୋଇଛି । ଓଡିଶାର ବିଭିନ୍ନ କୋଣରେ ରାମାୟଣର କଥାବସ୍ତୁକୁ ନେଇ ନାନା ପ୍ରକାର ଅନବଦ୍ୟ ଲୋକନୃତ୍ୟ, ସଂଗୀତ, ଚିତ୍ରକଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ ଆଦି ସୃଷ୍ଟି ହୋଇଛି । ଓଡିଆ ସାମାଜିକ କ୍ଷେତ୍ରରେ ରାମ, ଲକ୍ଷ୍ମଣ ଓ ସୀତାଙ୍କ ପ୍ରଭାବ ସୁସ୍ପଷ୍ଟ । ଲୋକକଥା ମାନଙ୍କରେ ମଧ୍ୟ ରାମାୟଣର ବହୁ ପ୍ରଭାବ ଦେଖିବାକୁ ମିଳେ ।

ଓଡିଶାର ଲୋକପ୍ରିୟ ଲୋକନୃତ୍ୟ ଦାସକାଠିଆରେ ବିଶେଷ ଗାୟନ ଶୈଳୀ ଓ ଭଂଗୀରେ – ରାମ ଯେ ରାମ, ରାମଯେ, ନବୀନ ସୁନ୍ଦର ରାମ ଯେ ସମସ୍ତଙ୍କୁ ଆକର୍ଷିତ କରେ । ମାତ୍ର କିଛି ଦଶନ୍ଧି ତଳେ ଓଡିଶାର ଗ୍ରାମେ ଗ୍ରାମେ ରାମଲୀଳା ପରିବେଷଣ କରାଯାଉଥିଲା । ଏବେ ମଧ୍ୟ କିଛି ଅଂଚଳରେ ନିରନ୍ତର ୭ ରାତିଧରି ୭ କାଣ୍ଡ ରାମାୟଣର କଥାବସ୍ତୁକୁ ଓଡିଆ ଭାଷାରେ ଗ୍ରାମୀଣ କବିମାନେ ସଂଗୀତ ଓ ନାଟକ ଆକାରରେ ପ୍ରସ୍ତୁତ କରି ପରିବେଷଣ କରନ୍ତି । ସ୍ଥାନୀୟ କଳାକାରମାନେ ବଡ ନିଷ୍ଠାର ସହ ପବିତ୍ର ଭାବରେ ଏଥିରେ ଭାଗ ନେଇଥାନ୍ତି । କଟକ ସହରର ମାରୁତିମଣ୍ଡପର ରାମଲୀଳା ଦିନେ ଖୁବ୍ ପ୍ରସିଦ୍ଧ ଥିଲା । ସାରା ଓଡିଶାରୁ ବଛା ବଛା କଳାକାରମାନେ ଏଥିରେ ଭାଗ ନେଉଥିଲେ । ନୃତ୍ୟ, ସଂଗୀତ ଓ ଅଭିନୟ – ଏ ସମସ୍ତର ଏକ ଆକର୍ଷଣୀୟ ମିଳନ ଦେଖିବାକୁ ମିଳେ ଓଡିଆ ରାମଲୀଳା ପରିବେଷଣରୁ । ଓଡିଶାର ପାଲାଗାୟକମାନେ ଉପେନ୍ଦ୍ରଭଂଜ ବିରଚିତ, "ବୈଦେହୀଶ ବିଳାସକୁ ବା ଗଙ୍ଗାଧର ମେହେରଙ୍କ "ତପସ୍ୱିନୀ" କାବ୍ୟକୁ ଯେପରି ବିଭିନ୍ନ ପ୍ରକାରେ ବିଶ୍ଳେଷଣ କରି ପରିବେଷଣ କରନ୍ତି, ତାହା ଖୁବ ମନୋମୁଗ୍ଧକର ଓ ପ୍ରଭାବଶାଳୀ ହୋଇଥାଏ । ଗ୍ରାମେ ଗ୍ରାମେ

ହନୁମାନ ବା ମହାବୀରଙ୍କ ପୂଜା ରାମ ସଂସ୍କୃତିର ଏକ ମହାନ ଧାରା, ଯାହା ପ୍ରାୟତଃ ୧୦ମ ଶତାବ୍ଦୀର ସୋମବଂଶୀ ରାଜତ୍ୱରୁ ପ୍ରାଚୀ ଉପତ୍ୟକାରେ ପ୍ରଚଳିତ । ହନୁମାନ୍‌ଙ୍କୁ ମହାଦେବଙ୍କ ବିଭୂତି ରୂପେ ପୂଜା କରାଯାଇଥାଏ । ଭାରତୀୟ ସଂସ୍କୃତିର ଧାର୍ମିକ ଧାରାମାନଙ୍କର ମହାମିଳନର ଏହା ଏକ ଜ୍ୱଳନ୍ତ ନିଦର୍ଶନ ତଥା ହରିହର ଉପାସନାର ଉତ୍କୃଷ୍ଟ ନମୂନା । ଭୁବନେଶ୍ୱରରେ ଥିବା କଳିଙ୍ଗ ମନ୍ଦିର ଶୈଳୀର ପ୍ରାରମ୍ଭିକ ପର୍ଯ୍ୟାୟର ଶତ୍ରୁଘ୍ନେଶ୍ୱର, ଭରତେଶ୍ୱର,ଲକ୍ଷ୍ମଣେଶ୍ୱର ବା ପରଶୁରାମେଶ୍ୱର ଆଦି ମନ୍ଦିରମାନଙ୍କର ନାମକରଣ ଅଷ୍ଟମ ଶତାବ୍ଦୀର, ଯାହା ଓଡିଶାରେ ରାମ ସଂସ୍କୃତିର ଲୋକପ୍ରିୟତାକୁ ଦର୍ଶାଇଥାଏ । ଏ ସବୁ ମନ୍ଦିରରେ ରାମାୟଣ କଥାବସ୍ତୁମାନ ଓ ଚରିତ୍ର ମାନଙ୍କର ମୂର୍ତ୍ତି ସ୍ଥାପତ୍ୟ ଦୃଷ୍ଟିଗୋଚର ହୁଏ ।

ପ୍ରାଚୀ ସାଂସ୍କୃତିକ ପରଂପରାରେ ରାମ ଉପାସନାର ପ୍ରଭାବ ମଧ୍ୟ ପରିଦୃଶ୍ୟମାନ । ଚଳିତ ଦଶନ୍ଧିରେ ପ୍ରାଚୀସଂସ୍କୃତି ଉପରେ ବହୁ ଗବେଷଣାମାନ ହୋଇଥିବାରୁ ଏହାର ବହୁ ଅନାଲୋଚିତ ତଥ୍ୟସବୁ ଲୋକଲୋଚନକୁ ଆସୁଛନ୍ତି । ପ୍ରାଚୀ ଉପତ୍ୟକା ମହାନଦୀର ତ୍ରିକୋଣ ଭୂମିର ଦକ୍ଷିଣ ଅଂଶ । ଏହା ଯୁଗ ଯୁଗଧରି ଓଡିଆ ଜାତିର ରାଜନୈତିକ, ସାଂସ୍କୃତିକ ଓ ଅର୍ଥନୈତିକ ବିକାଶର ମୁଖ୍ୟ କେନ୍ଦ୍ର ରୂପେ ନିଜର ଯୋଗଦାନ ଦେଇଆସିଛି । ଶୈବ, ଶାକ୍ତ,ବୈଷ୍ଣବ, ବୌଦ୍ଧ - ଜୈନ ଆଦି ସମସ୍ତ ଭାରତୀୟ ଧାର୍ମିକ ପରଂପରାର ଏକ ବିଶେଷ ମିଳନ କ୍ଷେତ୍ର ଥିଲା ପ୍ରାଚୀ ଉପତ୍ୟକା । ଦକ୍ଷିଣ କଙ୍ଗୋଦ, ଦକ୍ଷିଣ ତୋଷାଳୀ ଓ ଉତ୍ତରର ଉଡ୍ର , ଉତ୍କଳ ବା ଉତ୍ତର ତୋଷାଳୀର ଏ ମିଳନ କ୍ଷେତ୍ର । ୬୦୦ ବର୍ଗ କି.ମିର ଏ ଅଂଚଳର ସାଂସ୍କୃତିକ ବିଭବର ଚମତ୍କାରିତା, ବୈଚିତ୍ର୍ୟ ଓ ବିଭବର ଭିନ୍ନତା, ଉତ୍କର୍ଷ ସମସ୍ତଙ୍କୁ ଚମତ୍କୃତ କରେ ।

ଏ ସଭ୍ୟତାର ବିଶେଷ ଆକର୍ଷଣ ହେଉଛି ଚୌରାସୀ ଗ୍ରାମର ବରାହୀ ମନ୍ଦିରରେ ଥିବା ନାହାଚାଳିଆ ଆୟତାକାର ମୁଖଶାଳାର ଛାତର ନିମ୍ନ ଭାଗରେ ଥିବା ରାମାୟଣ ବିଷୟବସ୍ତୁର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ପ୍ରସ୍ତରରେ ଖୋଦିତ ଦୃଶ୍ୟାବଳୀ । ଏହା ଏପରି ଜୀବନ୍ତ ଓ ମନୋମୁଗ୍ଧକର ଯେ ଦେଖିଲେ ସ୍ୱତଃ ଓଡିଆ ଶିଳ୍ପୀମାନଙ୍କର ଉତ୍କର୍ଷ ପାଇଁ ମସ୍ତକ ନତ ହୋଇଯାଏ । ଏଥିର ବହୁ ଦୃଶ୍ୟାବଳୀ ସମୟ ଓ ନିକଟବର୍ତ୍ତୀ ସମୁଦ୍ରର ଲୁଣା ପବନର ପ୍ରଭାବ ଯୋଗୁ ନଷ୍ଟ ହୋଇ ଯାଇଛି । କିଛି ମଧ୍ୟ ଅସ୍ପଷ୍ଟ । ବିଶେଷକରି ରାମଲକ୍ଷ୍ମଣ ସୀତାଙ୍କ ବନଗମନ, ମାୟାମୃଗ, ସପ୍ତତାଳଭେଦ - ବାଳୀବଧ, ହନୁମାନର

ଅଶୋକ ବନରେ ରାକ୍ଷସୀ ପରିବେଷ୍ଟିତ ସୀତାଙ୍କ ସନ୍ଧାନ ଓ ଶ୍ରୀରାମଙ୍କ ମୁଦ୍ରିକା ପ୍ରଦାନ, ବାନର, ଭଲ୍ଲୁକଙ୍କ ଦ୍ୱାରା ସେତୁବନ୍ଧ ନିର୍ମାଣ ଓ ପ୍ରତିଷ୍ଠା, ଯୁଦ୍ଧ ଯାତ୍ରା, କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ, ବାନର ଅସୁର ଯୁଦ୍ଧ, ଦେବତାଙ୍କ ପୁଷ୍ପବୃଷ୍ଟି, ରାମାଭିଷେକ ଆଦି ଦୃଶ୍ୟ ଅତ୍ୟନ୍ତ ସୁସ୍ପଷ୍ଟ ଓ ସୁଖଦାୟକ । କଠିନ ପଥର ଉପରେ ନିହାଣମୁନରେ କେତେ ଏକାଗ୍ରତା, ପରିଶ୍ରମ ଓ ସିଦ୍ଧତାରେ ଓଡିଆ ଶିଳ୍ପୀମାନେ ଆଜକୁ ୧୦୦୦ – ୧୨୦୦ ବର୍ଷତଳେ ଏଭଳି ମନୋରମ କଳାକୃତି ପ୍ରସ୍ତୁତ କରି ପାରିଥିଲେ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ରାମାୟଣର ବିଭିନ୍ନ ଦୃଶ୍ୟରେ ବିଭିନ୍ନ ମୁଖ୍ୟ ଓ ଅନ୍ୟାନ୍ୟ ଚରିତ୍ରମାନଙ୍କୁ ଏକାଠି ଖୋଦେଇ କରି ସେଥିରେ ପ୍ରାକୃତିକ ଦୃଶ୍ୟକୁ ପୃଷ୍ଠଭାଗରେ ଦର୍ଶାଇ ଲୋକପ୍ରିୟ ଦୃଶ୍ୟମାନଙ୍କୁ ପରିସ୍ଫୁଟନ କରିବା ଏତେ ସହଜ ନଥିଲା । ବିଶେଷକରି ବାନର ଅସୁର ମାନଙ୍କର ବହୁ ଯୁଦ୍ଧ ଦୃଶ୍ୟ ସୃଷ୍ଟି କରାଯାଇ ସମସ୍ତ ଦୃଶ୍ୟଚିତ୍ରମାନଙ୍କ ଆଧାରରେ କାହାଣୀର ଚଳମାନତା ରକ୍ଷା କରାଯାଇଛି ।

ବରାହୀ ମନ୍ଦିର କଳିଙ୍ଗ ମନ୍ଦିର ଶୈଳୀର ଏକ ବିଶେଷ ଓ ଆକର୍ଷଣୀୟ ଢାଂଚା ଖାକରା ଶ୍ରେଣୀଭୁକ୍ତ ମନ୍ଦିର ।ଉକ୍ତ ମନ୍ଦିରର ବିଶେଷ ଆକର୍ଷଣ ହେଉଛି ଏହାର ଜଂଘ ଓ ଗଣ୍ଡି ଅଂଶର ବହୁ ସୂକ୍ଷ୍ମ କାରୁକାର୍ଯ୍ୟମାନ ଦୃଶ୍ୟମାନ । ଏହାର ମସ୍ତକ ଗଠନ ମଧ୍ୟ ବିଶେଷ ସ୍ଥାପତ୍ୟ ଶୈଳୀର । ସଂପୂର୍ଣ୍ଣ ମନ୍ଦିର ତାର ଆୟତାକାର ଓ ଅପେକ୍ଷାକୃତ ଲମ୍ବ ମୁଖଶାଳା ସହ ସଂପୂର୍ଣ୍ଣ ଚିତ୍ରକଳାର ଉତ୍କର୍ଷ ପରିପ୍ରକାଶ କରିଥାଏ, ସତେଯେପରି ଆରମ୍ଭରୁ ଶେଷ, ଉପରୁ ତଳ.ସମସ୍ତ ଅଂଶର କାରୁକାର୍ଯ୍ୟ ପରସ୍ପର ସହ ନିବିଡ ଭାବରେ ସଂପୃକ୍ତ । ଗୋଟିଏ ଦୃଷ୍ଟିରେ ହିଁ ସମଗ୍ର ମନ୍ଦିରର ନୈସର୍ଗିକ ଶୋଭାକୁ ଉପଲବ୍ଧି କରିହୁଏ ।

ଏ ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ ବରାହୀଙ୍କ ମୂର୍ତ୍ତି ମଧ୍ୟ ଅତ୍ୟନ୍ତ ରମଣୀୟ ଓ ଭୀତିପ୍ରଦ । ସେ ଥିଲେ ବୌଦ୍ଧଦେବୀ, ପରେ ସପ୍ତମାତୃକା ଉପାସନା ଆଧାରରେ ଶାକ୍ତ ଧର୍ମ ଭୁକ୍ତା ହେଲେ । ବୌଦ୍ଧ ଓ ଶୈବଧର୍ମର ଯେଉଁ ଅପୂର୍ବ ମହାମିଳନ ଭୌମକର ବଂଶ ରାଜତ୍ୱର ଶେଷଭାଗକୁ ଆରମ୍ଭ ହୋଇଥିଲା, ତାହାର ଏ ସ୍ପଷ୍ଟ ନିଦର୍ଶନ । ମାତ୍ର ଏହି ଭିନ୍ନ ସ୍ୱାଦର ମନ୍ଦିରରେ ରାମକଥାର ବିଭିନ୍ନ ଚିତ୍ରାବଳୀ, ଅଷ୍ଟମ – ନବମ ଶତାବ୍ଦୀର ଓଡିଶାରେ ରାମ ଉପାସନାର ଅବସ୍ଥିତି ଓ ଲୋକପ୍ରିୟତାକୁ ପ୍ରତିପାଦନ କରେ । ଏକଥା ନୁହେଁ ଯେ ବରାହୀ ମନ୍ଦିରର ନାହାଚାଳିଆରେ ଖୋଦିତ ରାମାୟଣର

ଜୀବନ୍ତ ଦୃଶ୍ୟସବୁ ଗବେଷକମାନେ ଆଗରୁ ଦେଖି ନାହାଁନ୍ତି, ମାତ୍ର ତାକୁ ନୂତନ ରୂପରେ ଆବିଷ୍କାର କରି ତାର ତାତ୍ତ୍ୱିକ ତର୍ଜମା ହୋଇ ପାରିନଥିଲା ।

କବିରାଜ ଜୟଦେବ ଶ୍ରୀଗୀତଗୋବିନ୍ଦ କାବ୍ୟର ରଚୟିତା । ଦିନେ ସଂସ୍କୃତ ଭାଷାରେ କ୍ଲିଷ୍ଟ ଓ ବାରମ୍ବାର ଅଭିଧାନ ସାପେକ୍ଷ ଶବ୍ଦ ବ୍ୟବହାର କରିବାକୁ କବିତ୍ୱ କୁହାଯାଉଥିଲା । ମାତ୍ର ଜୟଦେବ ସଂସ୍କୃତ ସାହିତ୍ୟକୁ ଏ ପ୍ରକାର ପରାଧୀନତାରୁ ମୁକ୍ତ କଲେ । ସଭାରେ ପାଣ୍ଡିତ୍ୟ ଦେଖାଇ ବାହାବା ପାଇବା ତାଙ୍କର ଉଦ୍ଦେଶ୍ୟ ନଥିଲା । ସେ ଥିଲେ ପ୍ରଥମେ ଭକ୍ତ, ପରେ କବି । ତାଙ୍କ କବିତ୍ୱ ସମର୍ପିତ ଥିଲା ସଂପୂର୍ଣ୍ଣଭାବେ ତାଙ୍କ ଆରାଧ୍ୟ ମାଧବଙ୍କ ପାଇଁ । ଜୟଦେବଙ୍କ ସମୟ ଥିଲା ୧୧-୧୨ଶ ଶତାବ୍ଦୀ, ସେତେବେଳେ ପରାକ୍ରମୀ ଗଙ୍ଗମାନଙ୍କର ରାଜତ୍ୱ । ଜଗନ୍ନାଥ ଧର୍ମ ଥିଲା ରାଷ୍ଟ୍ରଧର୍ମ ଓ ରାଜଧର୍ମ । ଏତିକିବେଳେ ମାଧବ ଉପାସନା ସାରା ଓଡିଶାରେ ଲୋକପ୍ରିୟ ଥିଲା ।ସେହି ସମୟରେ ଆଗେଇ ଚାଲୁଥିଲା ଓଡିଆ ଭାଷା । ସଂସ୍କୃତର ପ୍ରଭାବରୁ ଆଂଚଳିକ ସୌନ୍ଦର୍ଯ୍ୟରେ ପରିପୁଷ୍ଟ ଉଡ୍ର ଦେଶରେ ରୂପ ନେଇଥିଲା ପ୍ରାକୃତ ଉଡ୍ରଭାଷା । ପ୍ରୋଟୋ ଓଡିଆଭାଷା ତାର ସମସ୍ତ ବିଭବକୁ ସାଉଁଟି ଗୋଟିଏ ନିର୍ଦ୍ଦିଷ୍ଟ ରୂପରେଖ ଆହରଣ କରୁଥିଲା । ଗୋଟିଏ ଲିଙ୍ଗୁଆ ଫ୍ରାଙ୍କା ଜନ୍ମ ନେଉଥିଲା ସମଗ୍ର ଉତ୍କଳବାସୀଙ୍କ ପାଇଁ । ତେଣୁ ଉତ୍କଳୀୟ ଜେୟଦେବଙ୍କ ରଚିତ ସଂସ୍କୃତରେ ମଧ୍ୟ ସରଳତା, ସାବଲୀଳତା ଓ ଆଂଚଳିକତାର ପ୍ରଭାବ ପଡିଥିଲା ।

କୁହାଯାଏ ଯେ ଶ୍ରୀ ଗୀତଗୋବିନ୍ଦର ରଚୟିତା ଜୟଦେବ ଶ୍ରୀରାମ ଗୀତଗୋବିନ୍ଦ ରଚନା କରିଥିଲେ । ଶ୍ରୀମଦ୍‌ରାମଗୀତଗୋବିନ୍ଦ ମଧ୍ୟ ଭାରତୀୟ ଭକ୍ତି ଭାବଧାରାର ଆଧାରରେ ରଚିତ ଅନ୍ୟ ଏକ ମନୋରମ କାବ୍ୟ । ବହୁ ପଣ୍ଡିତ – ବିଦ୍ୱାନ ମତ ଦିଅନ୍ତି ଯେ ଜୟଦେବଙ୍କ ନାମରେ ଏହି ସମୟରେ ବହୁ କବି ପରିଚିତି ସୃଷ୍ଟି କରିଛନ୍ତି । ତେଣୁ ଜୟଦେବଙ୍କ ନାମକୁ ନେଇ ବହୁ ବୈଚାରିକ ଦ୍ୱନ୍ଦ୍ୱ ରହିଛି । ପ୍ରଶ୍ନ ଆସୁଛି ଶ୍ରୀମଦ୍‌ରାମଗୀତଗୋବିନ୍ଦର ରଚୟିତା ଜୟଦେବ ଓ ଶ୍ରୀଗୀତଗୋବିନ୍ଦର ରଚୟିତା ଜୟଦେବ ଜଣେ ତ ?

ପ୍ରାଚୀ ସଂସ୍କୃତିର ବିଶିଷ୍ଟ ଗବେଷକ ଶ୍ରୀଯୁକ୍ତ ହଂସନାଥ ସାହୁ ପ୍ରମାଣ କରିବାକୁ ପ୍ରଚେଷ୍ଟା କରିଛନ୍ତି ଯେ ଶ୍ରୀମଦ୍‌ରାମଗୀତଗୋବିନ୍ଦର ଯେଉଁ ଜୟଦେବ ରଚୟିତା ସେଇ ହିଁ ଶ୍ରୀଗୀତଗୋବିନ୍ଦ କାବ୍ୟର ରଚୟିତା । ସେ ମଧ୍ୟ ଉତ୍କଳୀୟ । ପ୍ରାଚୀ ସଂସ୍କୃତି

କ୍ଷେତ୍ରରେ ଜନ୍ମନେଇ ଜୟଦେବ ତାଙ୍କ ସମୟର ଲୋକପ୍ରିୟ ଧର୍ମଧାରା ରାମ ଆରାଧନାର ଆଧାରରେ ରଚନା କରିଥିଲେ ଶ୍ରୀରାମଗୀତଗୋବିନ୍ଦ । ଦୁଇଟି କାବ୍ୟରେ ଗୀତଗୋବିନ୍ଦ ଶବ୍ଦର ବ୍ୟବହାର ହୋଇଛି । ବରାହୀ ମନ୍ଦିର ଗାତ୍ରରେ ଖୋଦିତ ଦୃଶ୍ୟମାନ ରାମାୟଣ ଦୃଶ୍ୟାବଳୀ ମଧ ତାଙ୍କୁ ରାମାୟଣ ଆଧାରରେ ଶ୍ରୀରାମଗୀତଗୋବିନ୍ଦ କାବ୍ୟ ରଚନା କରିବାକୁ ପ୍ରେରଣା ଯୋଗାଇଥାଇପାରେ ।

ଶ୍ରୀଯୁକ୍ତ ସାହୁଙ୍କର ଏଭଳି ପ୍ରଚେଷ୍ଟା ନିଶ୍ଚୟ ପ୍ରଶଂସାର୍ହ । ନିରବଛିନ୍ନ ଭାବରେ ଦୀର୍ଘ ୪୦ ବର୍ଷରୁ ଊର୍ଦ୍ଧ୍ୱ ସମୟ ସେ ପ୍ରାଚୀ ଅଂଚଳରେ ପ୍ରତି ଗାଁ, ପ୍ରତି ମନ୍ଦିର, ପ୍ରତିମୂର୍ତ୍ତି, ପ୍ରତି ମଠ, ପ୍ରତି ମେଳା ମହୋତ୍ସବ – ସବୁକୁ ଘୁରି ଘୁରି ଦେଖିଛନ୍ତି , ପରଖି କରିଛନ୍ତି । ପ୍ରାଚୀ ସଂସ୍କୃତିର ସେ ଜଣେ ଜୀବନ୍ତ ଏନସାଇକ୍ଲୋପେଡିଆ । ଆଶାକରେ ତାଙ୍କର ଏ ନୂତନ ପ୍ରୟାସ ଗବେଷକମାନଙ୍କ ପାଇ ଓଡିଶା ଇତିହାସର ଆଉ ଏକ ଗୌରବାବହ ଅଧ୍ୟାୟକୁ ଉନ୍ମୋଚନ କରିବ ।

ଡକ୍ଟର ପ୍ରଶାନ୍ତ କୁମାର ପ୍ରଧାନ

*ଇତିହାସ ଅଧ୍ୟାପକ : ଉଦୟନାଥ ସ୍ୱୟଂଚାଳିତ ବିଜ୍ଞାନ ଓ ବୈଷୟିକ ମହାବିଦ୍ୟାଳୟ, ଅଡଶପୁର*





# ଭୂମିକା

ଭାରତୀୟ ସଂସ୍କୃତ ସାହିତ୍ୟରେ ଜୟଦେବ ନାମଧାରୀ ଅନେକ କବି ସ୍ୱକୀୟ କୃତିତ୍ୱ ପ୍ରତିପାଦନ କରିଛନ୍ତି । ପରଂତୁ ସେମାନଙ୍କ ମଧ୍ୟରେ ଶ୍ରୀଗୀତଗୋବିନ୍ଦମ୍ କାବ୍ୟର ରଚୟିତା ଉତ୍କଳୀୟ କବି କବିରାଜ ଜୟଦେବ ମହାକବି ଭାବରେ ପରିଚିତ ଓ ପ୍ରତିଷ୍ଠିତ । ଶ୍ରୀଗୀତଗୋବିନ୍ଦ କାବ୍ୟ ତଥା ଅନ୍ୟ କେତେକ କାବ୍ୟ ଓ ପଦ୍ୟାବଳୀ କବିଙ୍କର ମହାନ ସୃଷ୍ଟି କବିଙ୍କର ସୃଷ୍ଟି ସାମଗ୍ରୀ ମାତ୍ରାବୃତ୍ତ ଛନ୍ଦରେ ଲିପିବଦ୍ଧ । ସମସ୍ତ ସୃଷ୍ଟି ସାମଗ୍ରୀର ଶବ୍ଦ ସଂଯୋଜନା, ଭାବବ୍ୟଞ୍ଜନା ଓ ଭକ୍ତିଭାବ ଅତୀବ ଅନୁରଞ୍ଜିତ ଓ ରସାପ୍ଳୁତ :-

ରସିକ ରସାୟନ ରସବତୀ ଜୀବନ
ରସମୟ ରାସ ବିହାରୀ ।
ପୁଚ୍ଛମୁକୁଟ ଶିରଃ ପୀତାମ୍ବରଧର
ମୁରଲୀଧର ଗିରିଧାରୀ ।।
ଶ୍ରୀଜୟଦେବ ଭଣିତ ମିତିଗୀତମ୍
ଜୟଦେବ ଆନନ୍ଦ କନ୍ଦେ ।
ବିହିତ ଚରଣ କମଳେ
ଶୋଭାକୃତ ଜନ ବନ୍ଦେ ।।

ଉକ୍ତ ସଂଗୀତ ଜଗତସିଂହପୁର, କୁଜଂଗ ଅଞ୍ଚଳର ଅଧିକାଂଶ ପାଲାଗାୟକମାନଙ୍କ ଦ୍ୱାରା ମଙ୍ଗଳାଚରଣ ଭାବେ ପାଠ କରାଯିବାର ଦେଖାଯାଏ ।

ଦ୍ୱାଦଶ ଶତାବ୍ଦୀ ପରଠାରୁ ଶ୍ରୀଗୀତଗୋବିନ୍ଦମ୍ କାବ୍ୟର ସଂଗୀତ ଝଂକାର ଭାରତବର୍ଷର ବିଭିନ୍ନ କୋଣ-ଅନୁକୋଣରେ ନିନାଦିତ ହେବାଦ୍ୱାରା ଶ୍ରୀଗୀତଗୋବିନ୍ଦମ୍ କାବ୍ୟର ସଂଗୀତ ମାଧୁରୀରେ ଆହ୍ଲାଦିତ ହୋଇ ତଥା ଜୟଦେବଙ୍କ ଲୋକପ୍ରିୟତାକୁ

ଶ୍ରେୟମଣି ଅନେକ ବିଦ୍ୱାନ କବି ସ୍ୱରଚିତ କାବ୍ୟକୁ ଜୟଦେବଙ୍କ ନାମରେ ଭଣିତା କଲେ, ଯଦ୍ୱାରା ଉତ୍କଳୀୟ ଭକ୍ତ କବି ଜୟଦେବଙ୍କ ମର୍ଯ୍ୟାଦା ତଥା ଲୋକପ୍ରିୟତା ବୃଦ୍ଧି ପାଇଲା; ପରଂତୁ ସେମାନଙ୍କ ପରିଚିତି ସଂପର୍କରେ ବହୁବିଧ ଦ୍ୱନ୍ଦ୍ୱ ସୃଷ୍ଟି ହେଲା ।

**ପ୍ରାଚୀ ଉପତ୍ୟକାର ସାଂସ୍କୃତିକ ଧାରା :-** ବୈଚିତ୍ର୍ୟମୟ ପ୍ରାଚୀ ଉପତ୍ୟକାର ସାଂସ୍କୃତିକ ପରଂପରା ଅନେକ ଦିଗରୁ ସ୍ୱତନ୍ତ୍ର, ଯାହା ଓଡ଼ିଶାର ସାଂସ୍କୃତିକ ପରଂପରାର ଏକ ବୃହତ ସଂଗ୍ରହାଳୟ ଭାବେ ପରିଚିତ ଓ ପ୍ରତିଷ୍ଠିତ । ଏହି ବିରଳ ଭୂଖଣ୍ଡରେ ପ୍ରାଚୀନ ଧାର୍ମିକ ଓ ସାଂସ୍କୃତିକ ପରଂପରାର ସ୍ୱାକ୍ଷର ବହନ କରୁଥିବା ଅନେକ ଦୁର୍ଲଭ ତଥା ବିସ୍ମୟକର ସ୍ଥାପତ୍ୟମାନ ଉପଲବ୍ଧ । ଏହି କୀର୍ତ୍ତିରାଜି ଅଗଣିତ ଐତିହାସିକ, ଗବେଷକ ତଥା ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କୁ ଆଜି ବି ଆକୃଷ୍ଟ କରୁଛି ।

ପ୍ରାଚୀ ସାଂସ୍କୃତିକ ବିଭବର ବୈଶିଷ୍ଟ୍ୟ ହରିହର ଉପାସନା ତଥା ଦ୍ୱାଦଶଶମ୍ଭୁ ଓ ଦ୍ୱାଦଶମାଧବ ସାଂସ୍କୃତିକ ପରଂପରା ଏବଂ ଲକ୍ଷ୍ମୀ-ନାରାୟଣ ଯୁଗଳ ମୂର୍ତ୍ତି ଉପାସନା, ଯାହା ଦିନେ ପ୍ରାଚୀ ଉପତ୍ୟକାର କେନ୍ଦୁବିଲ୍ୱ ଗ୍ରାମରେ ସଂଭୂତ ଭକ୍ତକବି ଜୟଦେବଙ୍କୁ ବିମୋହିତ କରିଥିଲା । ବୈଷ୍ଣବୀୟ ମହାର୍ଘ୍ୟ କାବ୍ୟ ଶ୍ରୀଗୀତଗୋବିନ୍ଦମ୍ କାବ୍ୟ ରଚନା କରିବାକୁ କବିରାଜ ଜୟଦେବ ପ୍ରାଚୀ ଉପତ୍ୟକାର ବିଭିନ୍ନ ବୈଷ୍ଣବୀୟ ପୀଠମାନ ଭ୍ରମଣ କରିଥିବାର ପ୍ରାମାଣିକତା ତାଙ୍କ ରଚିତ କାବ୍ୟମାନଙ୍କରୁ ପ୍ରତୀୟମାନ । କବିରାଜ ଜୟଦେବ ପ୍ରାଚୀ ଉପତ୍ୟକାସ୍ଥ ନିମାପଡ଼ା ଥାନା ଅନ୍ତର୍ଗତ ଚୌରାସୀ ଗ୍ରାମର ଲକ୍ଷ୍ମୀ-ନାରାୟଣ ମନ୍ଦିରର ଆରାଧ ଲକ୍ଷ୍ମୀ-ନାରାୟଣଙ୍କ କମନୀୟ ଯୁଗଳ ମୂର୍ତ୍ତି ସଂଦର୍ଶନରେ ବିମୋହିତ ହୋଇ କାବ୍ୟର ପ୍ରଥମ ସର୍ଗ ଷଷ୍ଠ ଶ୍ଳୋକରେ ରଚନା କରିଛନ୍ତି :-

ପଦ୍ମାପୟୋଧରତଟୀ ପରିରମ୍ଭଲଗ୍ନା
କାଶ୍ମୀର ମୁଦ୍ରିତମୁରୋ ମଧୁସୂଦନସ୍ୟ ।
ବ୍ୟକ୍ତାନୁରାଗମଖେଳଦଃଅନଙ୍ଗ ଖେଦଂ
ସ୍ୱେଦାମ୍ବୁପୂରମନୁପୁରୟିତୁଂ ପ୍ରିୟଂ ବଃ ॥

କବିରାଜ ଜୟଦେବ ପ୍ରସ୍ତରରେ ଖୋଦିତ କମନୀୟ ଜୀବନ୍ତ ଯୁଗଳ ମୂର୍ତ୍ତି ସଂଦର୍ଶରେ ତଲ୍ଲୀନ ହୋଇ ନିଜର ଭାବାବେଗକୁ ଗୋଟିଏ ଶ୍ଳୋକରେ ସୀମିତ ରଖିନପାରି କାବ୍ୟର ଦ୍ୱିତୀୟ ଗୀତରେ ବର୍ଣ୍ଣନା କରିଛନ୍ତି :-

ଶ୍ରୀତ କମଳା କୁଚମଣ୍ଡଳ-ଧୃତ କୁଣ୍ଡଳ,
କଳିତ ଲଳିତ ବନମାଳ-ଜୟ ଜୟଦେବ ହରେ ।।

କବିରାଜ ଜୟଦେବ ଗୀତଗୋବିନ୍ଦମ୍ କାବ୍ୟକୁ ଭାରତୀୟ ନାଟ୍ୟଶାସ୍ତ୍ରର ଅଷ୍ଟନାୟିକାଭାବ ଆଧାରରେ ରଚନା କରିଥିଲେ ମଧ୍ୟ ଗୀତଗୋବିନ୍ଦ କାବ୍ୟର ଦ୍ୱାଦଶ ସର୍ଗକୁ ଦ୍ୱାଦଶମାଧବଙ୍କ ନାମରେ ଭଣିତା କରି ପ୍ରାଚୀ ଦ୍ୱାଦଶ ମାଧବ ସାଂସ୍କୃତିକ ପରଂପରାର ଉତ୍କର୍ଷ ପ୍ରତିପାଦନ କରିଯାଇଛନ୍ତି । ତାଙ୍କ ସ୍ୱରଚିତ କାବ୍ୟରେ ପ୍ରାଚୀତଟସ୍ଥ ଦେବା-ଦେବୀଙ୍କ ସ୍ଥାପତ୍ୟର ପ୍ରତିଫଳନକରି ଯାଇଛନ୍ତି, ଯାହା ପ୍ରାଚୀ ସରସ୍ୱତୀ, ଜୟଦେବ ଓ ଜଗନ୍ନାଥଙ୍କୁ ଚିରସ୍ମରଣୀୟ କରିପାରିଛି ।

**ପ୍ରାଚୀ ଅବବାହିକାର ରାମ ସଂସ୍କୃତି :-** ପ୍ରାଚୀ ଉପତ୍ୟକାର ସାଂସ୍କୃତିକ ପରଂପରାର ସ୍ୱାକ୍ଷର ବହନ କରୁଥିବା ରାମ, ମହାବୀର ହନୁମାନାଦି ଉପାସନାର ପରଂପରା ବହୁ ପ୍ରାଚୀନ ହୋଇଥିଲେ ମଧ୍ୟ ତାହା ଐତିହାସିକ, ଗବେଷକମାନଙ୍କ ଦୃଷ୍ଟି ଆଢୁଆଳରେ ରହି ଯାଇଛି ତଥା ଲୋକଲୋଚନକୁ ଆସିପାରିନାହିଁ, ଯଦିଚ ଦ୍ୱାଦଶ ଶତାବ୍ଦୀର କବି କବିରାଜ ଜୟଦେବ ରାମ ସଂସ୍କୃତିର ସ୍ୱାକ୍ଷର ବହନ କରୁଥିବା ବାରାହୀ ମନ୍ଦିର ଗାତ୍ରରେ ଖୋଦିତ ରମାୟଣ କଥାବସ୍ତୁର ସଂକ୍ଷିପ୍ତ ସ୍ଥାପତ୍ୟକୁ ଆଧାରକରି ଶ୍ରୀରାମଗୀତଗୋବିନ୍ଦମ୍ କାବ୍ୟ ରଚନା କରିଯାଇଛନ୍ତି ।

ପ୍ରାଚୀ ଅବବାହିକାର କାକଟପୁର ସଂଲଗ୍ନ ଲବ-କୁଶ ମଠ, ଯେଉଁଠାରେ ଦୁଇଫୁଟ ଉଚ୍ଚତାର ଅଷ୍ଟଧାତୁ ନିର୍ମିତ ରାମ-ଲକ୍ଷ୍ମଣ ଓ ସୀତାଙ୍କ ମୂର୍ତ୍ତି ଉପାସିତ । ନୟାହାଟ ସଂଲଗ୍ନ ଓଟର ଶାସନ ସନ୍ନିକଟ ମନ୍ଦିରରେ ଧଳାମୁଗୁନି ପ୍ରସ୍ତର ନିର୍ମିତ ରାମ-ଲକ୍ଷ୍ମଣ ଓ ସୀତାଙ୍କ ମୂର୍ତ୍ତି ଉପାସିତ, ଯାହା ପ୍ରାଚୀ ରାମସଂସ୍କୃତିର ବାର୍ତ୍ତାବହ ।

ସୋମବଂଶୀ ରାଜତ୍ୱରେ ନିର୍ମିତ ଶୈବପୀଠ ତଥା ବୈଷ୍ଣବୀୟ ମନ୍ଦିର ମାନଙ୍କରେ ବାଲିପ୍ରସ୍ତର ନିର୍ମିତ ମହାବୀର-ହନୁମାନ ମୂର୍ତ୍ତିମାନଙ୍କର ଉପାସନା ପରଂପରା ଦୃଶ୍ୟମାନ ।

ପରଂତୁ ନିଆଳୀ ସନ୍ନିକଟ ଭବନାଥପୁର ଗ୍ରାମର ସୋମବଂଶୀକୃତ ଶୈବପୀଠ- ଭବନାଥଙ୍କ ମନ୍ଦିରରେ ଉପାସିତ ୪ ଫୁଟ ଉଚ୍ଚତା ବିଶିଷ୍ଟ ବାଲିପ୍ରସ୍ତର ନିର୍ମିତ ମହାବୀର-ହନୁମାନ ମୂର୍ତ୍ତି, ଶବାସନ ଉପରେ ଦଣ୍ଡାୟମାନ, ଅଭୟମୁଦ୍ରା ଓ

ବାମହସ୍ତରେ ଶିଳାଧାରଣ, ଉପବୀତ ପରିଧାନ, ଚମ୍ପକମାଳା ଧାରଣ, ଅଣ୍ଟାରେ ଘୁଂଗୁରମାଳ ଧାରଣର କମନୀୟ ମୂର୍ତ୍ତି । ଏହାର ବୈଶିଷ୍ଟ୍ୟ ଏହି ଯେ ଜଣେ ଉଲଗ୍ନ ନାରୀ ମୂର୍ତ୍ତି ଆଣ୍ଠେଇକରି ଦୁଇହାତରେ ମହାବୀରଙ୍କ ଦୁଇଗୋଡ଼ ପେଣ୍ଡାକୁ ଧାରଣ କରିବାର ମୂର୍ତ୍ତି, ପ୍ରାୟତଃ ତନ୍ତ୍ର ପ୍ରଭାବିତ ସ୍ଥାପତ୍ୟ ଭାବେ ସ୍ୱୀକୃତ । ତେଣୁ ପ୍ରାଚୀ ଉପତ୍ୟକାରେ ରାମ, ମହାବୀର-ହନୁମାନ ଉପାସନାର ସାଂସ୍କୃତିକ ପରଂପରା ବହୁ ପ୍ରାଚୀନ ଭାବେ ପ୍ରତିପାଦିତ ତଥା କବିରାଜ ଜୟଦେବଙ୍କ ପୂର୍ବରୁ ପ୍ରଚଳିତ ।

**ଓଡ଼ିଶାର ମନ୍ଦିର ସ୍ଥାପତ୍ୟରେ ରାମାୟଣର କଥାବସ୍ତୁ :**

ଓଡ଼ିଶାର ରାମ ସଂସ୍କୃତି ବହୁ ପୁରାତନ । ପ୍ରାୟତଃ ଧର୍ମକ୍ଷେତ୍ର ଗୁଡ଼ିକ ଥିଲା ଭାରତୀୟ ସଂସ୍କୃତିର ବାର୍ତ୍ତାବହ । ଓଡ଼ିଶାରେ ନିର୍ମିତ ମନ୍ଦିରମାନଙ୍କ ଗାତ୍ରରେ ପ୍ରାୟତଃ ଷଷ୍ଠ ଶତାବ୍ଦୀରୁ ରାମ ଚରିତକୁ ନେଇ ବହୁ ମୂର୍ତ୍ତିମାନ ଖୋଦିତ ହୋଇଛି । ଭୁବନେଶ୍ୱରସ୍ଥ ସପ୍ତମ ଶତାବ୍ଦୀରେ ନିର୍ମିତ ପରଶୁରାମେଶ୍ୱର ମନ୍ଦିର ଗାତ୍ରରେ ଖୋଦିତ ହୋଇଛି ରାବଣର କୈଳାସ ପର୍ବତ ଉତ୍ପାଟନର ଏକ ମନୋରମ ଦୃଶ୍ୟ । ସେହିପରି ରାମେଶ୍ୱର, ଲକ୍ଷ୍ମଣେଶ୍ୱର, ଭରତେଶ୍ୱର ପ୍ରଭୃତି ମନ୍ଦିର ଗାତ୍ରରେ ମଧ୍ୟ ରାମାୟଣର ବିଭିନ୍ନ ପ୍ରସଙ୍ଗର ସ୍ଥାପତ୍ୟମାନ ଦେଖାଯାଏ । ପ୍ରାୟତଃ ଅଷ୍ଟମ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱରର ସ୍ୱର୍ଣ୍ଣଜଳେଶ୍ୱର ମନ୍ଦିର ଗାତ୍ରରେ ଖୋଦିତ ହୋଇଛି ରାମାୟଣର ମାୟାମୃଗବଧ, ସପ୍ତତାଳ ଭେଦ-ବାଳୀବଧ, ସୁଗ୍ରୀବ-ଜାମ୍ବବାନ ଆଦିଙ୍କ ମନ୍ତ୍ରଣାର ସ୍ଥାପତ୍ୟ । ତେଣୁ ସପ୍ତମ ଶତାବ୍ଦୀରୁ ମନ୍ଦିର ସ୍ଥାପତ୍ୟରେ ରାମାୟଣ କଥାବସ୍ତୁର ସ୍ଥାପତ୍ୟ ପ୍ରଚଳିତ, ପରଂତୁ ବାରାହୀ ମନ୍ଦିର ଗାତ୍ରରେ ତାହା ପୂର୍ଣ୍ଣତା ପ୍ରାପ୍ତ ।

**ଐତିହାସିକ ପୃଷ୍ଠ ଭୂମିରେ ଚୌରାସୀ ଗ୍ରାମ :**

ପୁରୀ ଜିଲ୍ଲା, ନିମାପଡ଼ା ଥାନା ଅନ୍ତର୍ଗତ ଚୌରାସୀ ଗ୍ରାମ । ଏହା କଟକ - ଭୁବନେଶ୍ୱର ଠାରୁ ମାତ୍ର ୫୫ କି.ମି. ଦୂରତାରେ ଅବସ୍ଥିତ । କଟକ - କାକଟପୁର ରାଜ୍ୟ ରାଜପଥର ଅମରେଶ୍ୱର ଛକଠାରୁ ମାତ୍ର ୧ କି.ମି. ଦୂରତାରେ ଅବସ୍ଥିତ ତଥା ପୁଣ୍ୟତୋୟା ପ୍ରାଚୀନଦୀର ଗୋତୀର୍ଥ ସଂଲଗ୍ନ କ୍ଷେତ୍ରରେ ଅବସ୍ଥିତ ।

ଭୌମକର ରାଜ୍ୟର ଅନ୍ତରୁଦ୍ର ବିଷୟ ଅନ୍ତର୍ଗତ ଚୌରାସୀ ଗ୍ରାମ ଏବଂ ଭୌମକର ରାଜତ୍ୱରେ ପ୍ରଦତ୍ତ ଚୌରାସୀ ତାମ୍ରଫଳକରୁ ଚୌରାସୀଗ୍ରାମର ଅବସ୍ଥିତି

ନିରୂପିତ । ଚୌରାସୀଗ୍ରାମର ଭୌମକୀର୍ତ୍ତି – ଲଳିତମାଧବ, ଲକ୍ଷ୍ମୀ-ନାରାୟଣ ମନ୍ଦିର, ବୌଦ୍ଧ ଦଶଭୁଜା ସିଦ୍ଧଚାମୁଣ୍ଡା – ଜାଗୁଳେଇ, ବୌଦ୍ଧଦେବୀ ବଜ୍ରଘଣ୍ଟା ଓ ସିଦ୍ଧିଦାତ୍ରୀ ବାରାହୀଙ୍କ ମନ୍ଦିର, ପ୍ରାୟତଃ ଭୌମକର ରାଜତ୍ୱର ୯ମ/୧୦ମ ଶତାବ୍ଦୀ ନିର୍ମିତ ଭୌମକୀର୍ତ୍ତି ।

ଯଦିଚ ଅନେକ ଐତିହାସିକ ଓ ଗବେଷକ ବାରାହୀ ମନ୍ଦିର ତଥା ଆରାଧ୍ୟା ବାରାହୀ ଏବଂ ଲକ୍ଷ୍ମୀ-ନାରାୟଣଙ୍କ କମନୀୟ ସ୍ଥାପତ୍ୟରେ ଅଭିଭୂତ ହୋଇ ସେମାନଙ୍କ ସଂପର୍କରେ ଉଲ୍ଲେଖ କରିଛନ୍ତି । ପରଂତୁ ମନ୍ଦିର ମୁଖଶାଳାରେ ଖୋଦିତ ରାମାୟଣ କଥାବସ୍ତୁର ସମସ୍ତ ସ୍ଥାପତ୍ୟକୁ ଅନୁଧ୍ୟାନ କରିନାହାଁନ୍ତି । ଆରାଧ୍ୟା ସିଦ୍ଧିଦାତ୍ରୀ ବାରାହୀଙ୍କ ମନ୍ଦିର ଭୁବନେଶ୍ୱରର ବୈତାଳମନ୍ଦିର ନିର୍ମାଣର ପରବର୍ତ୍ତି ପର୍ଯ୍ୟାୟର ସ୍ଥାପତ୍ୟ ।

ଚୌରାସୀ ଗ୍ରାମର ବାରାହୀ ମନ୍ଦିରର ନାହାଚାଳିଆ ମୁଖଶାଳାର କାର୍ନିସରେ ଖୋଦିତ ହୋଇଛି ରାମାୟଣ କଥାବସ୍ତୁର ସଂକ୍ଷିପ୍ତ ସ୍ଥାପତ୍ୟ । ଯଥା – ଦଶରଥ – ବଶିଷ୍ଠ ବିଚାର –ବିମର୍ଶ, ରାମ-ଲକ୍ଷ୍ମଣ-ସୀତାଙ୍କ ବନଗମନ, ମାୟାମୃଗ ଶର ସନ୍ଧାନରେ ରାମ ଓ ଲକ୍ଷ୍ମଣ, ରାମ, ଲକ୍ଷ୍ମଣଙ୍କ ଜଟାୟୁ ସହ ସାକ୍ଷାତ, ପଂପାସରୋବର ନିକଟରେ ରାମ, ଲକ୍ଷ୍ମଣଙ୍କ ହନୁମାନ ସହ ସାକ୍ଷାତ, ସପ୍ତତାଳଭେଦ ଓ ବାଳୀବଧ, ସୁଗ୍ରୀବ ଅଭିଷେକ, ଜାମ୍ବବାନ ନିର୍ଦ୍ଦେଶରେ ହନୁମାନର ସୀତାଙ୍କୁ ସନ୍ଧାନ, ସାକ୍ଷାତ ଓ ଶ୍ରୀରାମଙ୍କ ମୁଦ୍ରିକା ପ୍ରଦାନ, ପ୍ରତ୍ୟାବର୍ତ୍ତନ ଓ ଶ୍ରୀରାମଙ୍କୁ ସୀତାଙ୍କ ସଂଦେଶ, ସମୁଦ୍ର ପ୍ରତି ଶ୍ରୀରାମଙ୍କ କ୍ରୋଧ, ବାନର, ଭଲ୍ଲୁକସେନା, ଜାମ୍ବବାନ, ସୁଗ୍ରୀବ, ଅଙ୍ଗଦ, ହନୁମାନ, ନଳ, ନୀଳ ପ୍ରଭୃତିଙ୍କ ଦ୍ୱାରା ସେତୁବନ୍ଧ ନିର୍ମାଣ, ରାବଣ ଦ୍ୱାରା ରାମେଶ୍ୱର ସେତୁବନ୍ଧ ପ୍ରତିଷ୍ଠା, ଶ୍ରୀରାମଙ୍କ ଯୁଦ୍ଧଯାତ୍ରା, ବିଭୀଷଣର ଲଙ୍କାପୁର ଦର୍ଶନ, ଲଙ୍କାରେ ବାନର – ଅସୁରଯୁଦ୍ଧ, ରାବଣ – ହନୁମାନ ଯୁଦ୍ଧ, ରାମ-ରାବଣ ପୁଷ୍ପକ ବିମାନରେ ଯୁଦ୍ଧ, କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ, ରାବଣ ନିଧନ, ଆକାଶରୁ ଦେବତାଙ୍କ ପୁଷ୍ପବୃଷ୍ଟି, ବିଭୀଷଣ ଅଭିଷେକ, ପୁଷ୍ପକବିମାନରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ନିର୍ଦ୍ଦେଶ, ସୀତାଙ୍କଠାରୁ ହନୁମାନର ମେଲାଣି, ଶ୍ରୀରାମଙ୍କ ଅଭିଷେକ ଓ ରାମରାଜ୍ୟ ସ୍ଥାପନ ପ୍ରଭୃତି ଦୃଶ୍ୟ ପ୍ରସ୍ତରରେ ଖୋଦିତ ହୋଇଛି । ଯାହା ପ୍ରାୟତଃ କବିରାଜ ଜୟଦେବକୃତ ଶ୍ରୀରାମ ଗୀତଗୋବିନ୍ଦମ୍ କାବ୍ୟର ବର୍ଣ୍ଣିତ ବିଷୟ ବସ୍ତୁ । ଏହା ବାରାହୀ ମନ୍ଦିରକୁ କାରୁକାର୍ଯ୍ୟ ବିମଣ୍ଡିତ କରିଛି ତଥା ମନ୍ଦିର ସ୍ଥାପତ୍ୟରେ ରାମକଥା ସ୍ଥାପତ୍ୟ ସଂସ୍କୃତିର ପୂର୍ଣ୍ଣତାପ୍ରାପ୍ତ ହୋଇଛି ।

କବିରାଜ ଜୟଦେବଙ୍କ ଜନ୍ମଦିନ ଅକ୍ଷୟ ତୃତୀୟା ତିଥିରେ ଚୌରାସୀ ଗ୍ରାମର ଗୋତୀର୍ଥଠାରେ ତୀର୍ଥସ୍ନାନ, ଅସ୍ଥିବିସର୍ଜନ କରାଯିବା ସହ ଅମରେଶ୍ୱରଙ୍କ ପୀଠ ସଂଲଗ୍ନ କ୍ଷେତ୍ରରେ ଅକ୍ଷୟ ତୃତୀୟା ଯାତ୍ରା ଅନୁଷ୍ଠିତ ହେବାର ପରଂପରା ଏଯାବତ୍ ପ୍ରଚଳିତ । କବିରାଜ ଜୟଦେବଙ୍କ ରଚିତ ଶ୍ରୀଗୀତଗୋବିନ୍ଦ କାବ୍ୟରେ ଲକ୍ଷ୍ମୀ-ନାରାୟଣ ଯୁଗଳ ମୂର୍ତ୍ତି ସ୍ଥାପତ୍ୟର ପ୍ରତିଫଳନ ତଥା ଶ୍ରୀରାମ ଗୀତଗୋବିନ୍ଦମ୍ କାବ୍ୟରେ ବାରାହୀ ମନ୍ଦିର ସ୍ଥାପତ୍ୟର ରାମାୟଣ କଥାବସ୍ତୁର ସଂକ୍ଷିପ୍ତ ସ୍ଥାପତ୍ୟ, ଆଧାରିତ ତଥା ଜନ୍ମତିଥିରେ ଅକ୍ଷୟ ତୃତୀୟା ଯାତ୍ରା ଓ ତୀର୍ଥସ୍ନାନ ଚୌରାସୀ ଗ୍ରାମ ସହ ଜୟଦେବଙ୍କ ସଂପର୍କକୁ ଦୃଢ଼ୀଭୂତ କରେ ତଥା କବିରାଜ ଜୟଦେବ ଶ୍ରୀରାମ ଗୀତଗୋବିନ୍ଦ କାବ୍ୟର ସ୍ରଷ୍ଟାଭାବେ ପ୍ରତିପାଦିତ କରେ ।

**ଶ୍ରୀମଦ୍‌ରାମଗୀତଗୋବିନ୍ଦମ୍ :-**

ସମ୍ଭବତଃ ଚୌରାସୀ ଗ୍ରାମର ବାରାହୀ ମନ୍ଦିର ଗାତ୍ରରେ ଖୋଦିତ ରାମାୟଣ କଥାବସ୍ତୁର ସଂକ୍ଷିପ୍ତ ସ୍ଥାପତ୍ୟ ଯାହାର ଅନେକ ଅଂଶ କ୍ଷୟପ୍ରାପ୍ତ ରହିଛି । ପ୍ରାଚୀ ଉପତ୍ୟକାର ରାମ, ମହାବୀର-ହନୁମାନଙ୍କ ସାଂସ୍କୃତିକ ପରଂପରାରେ ପ୍ରଲୁବ୍ଧ ହୋଇ କବିରାଜ ଜୟଦେବ ସଂକ୍ଷିପ୍ତରେ ଶ୍ରୀମଦ୍ରାମ ଗୀତଗୋବିନ୍ଦ କାବ୍ୟ ରଚନା କରିବାକୁ ପ୍ରୟାସ କରିଛନ୍ତି ।

କବିରାଜ ଜୟଦେବ ଶ୍ରୀଗୀତଗୋବିନ୍ଦ କାବ୍ୟର ଅନୁକରଣରେ ରାମାୟଣ କଥାବସ୍ତୁର ସଂକ୍ଷିପ୍ତ ସ୍ଥାପତ୍ୟକୁ ଆଧାର କରି ଶ୍ରୀରାମ ଗୀତଗୋବିନ୍ଦ କାବ୍ୟ ରଚନା କରିଛନ୍ତି, ଯାହା ସଂପୂର୍ଣ୍ଣ ଭାବରେ ପ୍ରାଚୀ ସଂସ୍କୃତି ଆଧାରିତ ଓ ଉତ୍କଳୀୟ ପରଂପରା ଅନୁସୃତ ।

ଆରାଧ୍ୟ ରାଧା-ମାଧବ ତଥା ରାଧା-ଗୋବିନ୍ଦଙ୍କ ପ୍ରଣୟଚିତ୍ର ଶ୍ରୀଗୀତଗୋବିନ୍ଦ କାବ୍ୟର କଥାବସ୍ତୁ, ପରଂତୁ ଗୀତଗୋବିନ୍ଦ କାବ୍ୟର ଅନ୍ତଃସ୍ୱର ପ୍ରେମ ଓ ପ୍ରଜ୍ଞାର ସମନ୍ୱିତ କାବ୍ୟ-ଏକ ଅଭିନବ ପ୍ରୟାସ ଓ ଉତ୍କଳୀୟ ସାଂସ୍କୃତିକ ପରଂପରାର ନିଜସ୍ୱ କୃତି । କାବ୍ୟର ନାୟକ ମାଧବଙ୍କ ପ୍ରତି ରାଧା ରୂପୀ ଜୀବମାନଙ୍କର ଉତ୍ସର୍ଗୀକୃତ ପ୍ରେମ ଭକ୍ତି, ଆବେଗ ସମର୍ପଣ ଓ ନିବେଦିତ ଅନ୍ତର୍ନିଷ୍ଠା ଭାବର ଆଧାର ହେତୁ କାବ୍ୟର ଶିରୋନାମା ଶ୍ରୀଗୀତଗୋବିନ୍ଦମ୍ । ପରଂତୁ ରାମାୟଣ କଥାବସ୍ତୁ

ଆଧାରିତ ଗୀତିକାବ୍ୟରେ ମଧ୍ୟ ଗୋବିନ୍ଦ ଶବ୍ଦର ପ୍ରୟୋଗ କରାଯାଇଛି, ଯାହା ବିବେଚନା ସାପେକ୍ଷ । କବିରାଜ ଜୟଦେବ ଶ୍ରୀରାମ-ଗୀତଗୋବିନ୍ଦ କାବ୍ୟର ଅନ୍ତିମ ପୁଷ୍ପିକାରେ ଲେଖିଛନ୍ତି :-

ଶ୍ରୀମଦ୍ ରାମାୟଣ କ୍ଷୀରସାଗରାନ୍ ମନ୍ଦରୋପମଃ ।
ଜୟଦେବୋ ଶ୍ରୀରାମଗୀତଗୋବିନ୍ଦଂ ରତ୍ନମାକରୋତ୍ ।।

ପୁନଶ୍ଚ ଏହାର ଟୀକାରେ ପ୍ରଦର୍ଶିତ ହୋଇଛି -

ଶ୍ରୀମଦ୍ରାମ ଗୀତଗୋବିନ୍ଦମ୍ - ରମନ୍ତେ ଯୋଗିନୋଽସ୍ମିନିତି ରାମଃ ।
ରାମଃଗୀତଃ ପ୍ରୀତ୍ୟାଭିବର୍ଣ୍ଣିତୋ ଯାସୁ ତାଃ ରାମଗୀତାଃ ଶ୍ଚ ଯାଗାବଃ ।
ରାମଗୀତଗାବଃ ବାଲ୍ମୀକ୍ୟାଦି ବାଚସ୍ତାସାଂ ଯୋ ବିନ୍ଦଃ ଲାଭଃ ।

ଅର୍ଥାତ ଯୋଗୀମାନେ ଯେଉଁ ରାମନାମରେ ନିମଗ୍ନ, ଯାହାଙ୍କୁ ବାଲ୍ମୀକ୍ୟାଦି ମୁନିଗଣ ଧ୍ୟାନକରି ସିଦ୍ଧିଲାଭ କରିଥିଲେ, ତାହା ଶ୍ରୀରାମଗୀତଗୋବିନ୍ଦମ୍ । ଶ୍ରୀଗୀତଗୋବିନ୍ଦମ୍ ଓ ଶ୍ରୀରାମ ଗୀତଗୋବିନ୍ଦମ୍ କାବ୍ୟର ସ୍ରଷ୍ଟା ଭାବରେ ଉତ୍କଳୀୟ କବି କବିରାଜ ଜୟଦେବଙ୍କୁ ଗ୍ରହଣ କରାଯିବା ଯୁକ୍ତିସଂଗତ ଏବଂ ଗୀତଗୋବିନ୍ଦମ୍ କାବ୍ୟ ରଚନା ପରେ ଶ୍ରୀରାମ ଗୀତଗୋବିନ୍ଦମ୍ କାବ୍ୟ ରଚନା କରାଯାଇଥିବା ପ୍ରତୀୟମାନ ।

ଉଭୟ କାବ୍ୟର ଗୁଣାତ୍ମକ ଓ କାବ୍ୟିକ ଚାରୁତାର ମୂଲ୍ୟବୋଧ ଉପରେ ଆଲୋକପାତ କରାଯାଇପାରେ । ଉଭୟ କାବ୍ୟର ଉପସ୍ଥାପନା, ବର୍ଣ୍ଣନା ଶୈଳୀ, ଆଲଙ୍କାରିକ ଶବ୍ଦ ସଂଯୋଜନା, ତଥା କାବ୍ୟିକ ଚାରୁତାର ସାମଞ୍ଜସ୍ୟ ପରିଲିଖିତ । ପରନ୍ତୁ ଶ୍ରୀରାମଗୀତଗୋବିନ୍ଦମ୍ କାବ୍ୟର ଗୀତଚୟର ରଚନା ଶୈଳୀ ଓ ପଦବିନ୍ୟାସ ଶ୍ରୀଗୀତଗୋବିନ୍ଦ କାବ୍ୟର ଗୀତଚୟମାନଙ୍କଠାରୁ ଅତ୍ୟନ୍ତ ସରଳ, ସାବଲୀଳ, ବୋଧଗମ୍ୟ ଓ ଉତ୍କଳୀୟ ପ୍ରାକୃତ ଭାଷା ଭଳି ପ୍ରତୀୟମାନ ।

**ଆରାଧ୍ୟ ଦେବଙ୍କ ଧ୍ୟାନ :-**

ବାଗ୍‌ଦେବତା ଚରିତ ଚିତ୍ରିତ ଚିତ୍ତସଦ୍ମା -
ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ ।

ଶ୍ରୀ ବାସୁଦେବ ରତିକେଳି କଥା ସମେତ
ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧମ୍ ।

**ଶ୍ରୀରାମଗୀତଗୋବିନ୍ଦ :-**

ବାଲ୍ମୀକିନାଽଽ ଦ୍ୟ କବିନା ଶତକୋଟି ସଂଖ୍ୟଂ,
ରାମାୟଣଂ ବିରଚିତଂ ଶଶି ମୌଳିନା ଚ ।
କାକେନ, ବାୟୁତନୟେନ ତଥାଽପରେଣ,
କିଂଚିତ୍ କରୋତି ଜୟଦେବ କବିଶ୍ଚରିତ୍ରମ୍ ।।

**ଜାବିଂ୍ୟକ ବାକ୍‌ଚାତୁରୀ :-**

ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସ କଳାସୁ କୁତୂହଳମ୍ ।
ମଧୁର କୋମଳ କାନ୍ତ ପଦାବଳୀ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ।।

**ରାମଗୀତଗୋବିନ୍ଦମ୍ :-**

ଯଦି ରାମ ପଦାମ୍ବୁଜେ ରତି
ର୍ଯଦି କାବ୍ୟ କଳାସୁ କୌତୁକମ୍ ।
ପଠନୀୟ ମିଦଂ ତଦୌଜସା
ରୁଚିରଂ ଶ୍ରୀଜୟଦେବ ବିନିର୍ମିତଂ ।।

**ରାଗ-ରାଗିଣୀ :-**

ଗୀତଗୋବିନ୍ଦ କାବ୍ୟରେ ବ୍ୟବହୃତ ରାଗ-ତାଳମଣ୍ଡିତ ଯତିପାତ ଛନ୍ଦର ଅନୁରୂପ ରାଗ, ତାଳ, ଯତିପାତଛନ୍ଦ ପ୍ରଭୃତି ଶ୍ରୀରାମଗୀତଗୋବିନ୍ଦ କାବ୍ୟରେ ଅନୁସୃତ । ପ୍ରାୟତଃ ଗୀତିକାବ୍ୟ ତଥା ରୀତିକାବ୍ୟରେ ରାଗ-ରାଗିଣୀର ବ୍ୟବହାର ହୋଇଥାଏ, ପରଂତୁ ଶ୍ରୀ ଗୀତଗୋବିନ୍ଦମ୍ କାବ୍ୟରେ ବ୍ୟବହୃତ ରାଗ-ତାଳ ଯତିପାତ ଛନ୍ଦର ସ୍ୱତନ୍ତ୍ରତା ପ୍ରତିପାଦିତ :-

ଯଦ୍ ଗାନ୍ଧର୍ବ କଳାସୁ କୌଶଳମନୁଧ୍ୟାନଂ ଚ ଯଦ୍ ବୈଷ୍ଣବଂ ।
ଯଚ୍ଛୃଙ୍ଗାର ବିବେକ ତତ୍ତ୍ୱରଚନା କାବ୍ୟେଷୁ ଲୀଳାୟିତମ୍ ।
ତତ୍ସର୍ବଂ ଜୟଦେବ ପଣ୍ଡିତ କବେଃ କୃଷ୍ଣୈକତାନାତ୍ମନଃ ।
ସାନନ୍ଦାଃ ପରିଶୋଧୟନ୍ତୁ ସୁଧିୟଃ ଶ୍ରୀଗୀତଗୋବିନ୍ଦତଃ ।।

ଶ୍ରୀଗୀତ ଗୋବିନ୍ଦମ୍ କାବ୍ୟରେ ବ୍ୟବହୃତ ରାଗ, ଯଥା- ରାମକେରୀ, ଗୁର୍ଜ୍ଜରୀ, ବସନ୍ତ, ଗୁଣ୍ଡକରୀ, କର୍ଣ୍ଣାଟ, ଦେଶାଖ୍ୟ, ବରାଡ଼ି, ଦେଶିବରାଡ଼ି, ଭୈରବୀ ଓ ମାଳବ ଗୌଡ଼ ପ୍ରଭୃତି ରାଗ ବ୍ୟବହୃତ ହୋଇଥିବା ସ୍ଥଳେ ଶ୍ରୀରାମ ଗୀତଗୋବିନ୍ଦମ୍ କାବ୍ୟରେ ମଧ୍ୟ - ରାମକରୀ, ଗୁର୍ଜ୍ଜରୀ, ବସନ୍ତ, ଗୁଣ୍ଡକରୀ, କର୍ଣ୍ଣାଟ, ଦେଶାଖ୍ୟ, ବରାଡ଼ି, ଦେଶିବରାଡ଼ି, ଭୈରବୀ, ମାଳବଗୌଡ଼ ରାଗସହ ଶାବରୀ ଓ ଆଶାବରୀ ରାଗର ସଂଯୋଜନା କରାଯାଇଛି । ତେଣୁ ଉଭୟ କାବ୍ୟର ରାଗ, ତାଳ, ଯତିପାତଛନ୍ଦ ପ୍ରଭୃତିର ସାମଞ୍ଜସ୍ୟ ପରିଲକ୍ଷିତ ତଥା ଉତ୍କଳୀୟ ଗାନ୍ଧର୍ବକଳାର ପୂର୍ଣ୍ଣ ବିକାଶ ପରିସ୍ଫୁଟ ।

ଶ୍ରୀଗୀତଗୋବିନ୍ଦମ୍ ଓ ଶ୍ରୀରାମ ଗୀତଗୋବିନ୍ଦମ୍ କାବ୍ୟରେ ବ୍ୟବହୃତ ରାଗ, ତାଳ, ଯତିପାତଛନ୍ଦର ସ୍ୱତନ୍ତ୍ରତା ପ୍ରତିପାଦିତ, ଯାହା ଭାରତବର୍ଷରେ ପ୍ରଚଳିତ କର୍ଣ୍ଣାଟକୀ ଓ ହିନ୍ଦୁସ୍ଥାନୀ ସାଂଗୀତିକ ଧାରା ଠାରୁ ସ୍ୱତନ୍ତ୍ର । ଗୀତଗୋବିନ୍ଦ କାବ୍ୟର ବ୍ୟବହୃତ ଛନ୍ଦୋବଦ୍ଧ ଶବ୍ଦ - ସଂଯୋଜନା, ରାଗତାଳ ମଣ୍ଡିତ ସାଂଗୀତିକ ଧାରାରୁ ଓଡ଼ିଶୀ ସଂଗୀତର ଉଦ୍ଭବ, ଯାହା ଉତ୍କଳୀୟ ସାଂଗୀତିକ ଧାରା ଓ ଉତ୍କଳୀୟ କବି କବିରାଜ ଜୟଦେବଙ୍କ ସ୍ୱତନ୍ତ୍ର ଉଦ୍ଭାବନା । ତେଣୁ ଉଭୟ କାବ୍ୟର ରାଗ, ତାଳ, ଲୟ ଓ ଛନ୍ଦୋବଦ୍ଧ ଶବ୍ଦ ସଂଯୋଜନା ତଥା ସାଂଗୀତିକ ଧାରାକୁ ଆଧାର କରି ପ୍ରତିପାଦନ କରାଯାଇପାରେ ଯେ ଶ୍ରୀ ରାମଗୀତଗୋବିନ୍ଦମ୍ କାବ୍ୟର ସ୍ରଷ୍ଟା ଉତ୍କଳୀୟ କବି କବିରାଜ ଜୟଦେବ, ଯେଉଁଥିରେ ଉତ୍କଳୀୟ ସାଂଗୀତିକ ଧାରା ତଥା ଉତ୍କଳୀୟ ସ୍ଥପତିର ଉତ୍କର୍ଷ ସ୍ଥାପତ୍ୟକଳାର ପଦଚିହ୍ନ ଛତ୍ରେ ଛତ୍ରେ ପ୍ରତିବିମ୍ବିତ ଓ ପ୍ରତିଧ୍ୱନିତ ।

**ଅବତାରବାଦ : -**

ଭାରତବର୍ଷର ଦଶାବତାର ଉପାସନା କ୍ଷେତ୍ରରେ ଦୁଇଟି ଶିଳାଲେଖର ପ୍ରାମାଣିକତା ଅନୁସରଣ କରାଯାଇଛି । ଶ୍ରୀଗୀତଗୋବିନ୍ଦମ୍ କାବ୍ୟର ଦଶାବତାର ସ୍ତୋତ୍ରରେ କବିରାଜ ଜୟଦେବ ସମ୍ଭବତଃ ବରାହ ପେରୁମଲ୍ଲ ମନ୍ଦିର ଶିଳାଲେଖ

ଆଧାରରେ ବଳରାମଙ୍କୁ ଅଷ୍ଟମ ଅବତାର ଭାବେ ବର୍ଣ୍ଣନା କରି ଭାଗବତ ତତ୍ତ୍ୱ ଆଧାରିତ ଭଗବାନ କୃଷ୍ଣଙ୍କୁ ଅବତାରୀ ପୁରୁଷ ଭାବେ ପ୍ରତିପାଦନ କରିଛନ୍ତି :-

ମତ୍ସ୍ୟଃ କୂର୍ମୋ ବରାହଶ୍ଚ ନରସିଂହଶ୍ଚ ବାମନଃ ।
ରାମୋ ରାମଶ୍ଚ ରାମଶ୍ଚ ବୁଦ୍ଧଃ କଲ୍‌କୀ ଚ ତେ ଦଶ ।।

ପରଂତୁ ଶ୍ରୀରାମଗୀତଗୋବିନ୍ଦମ୍ କାବ୍ୟରେ କବିରାଜ ଜୟଦେବ ସମ୍ଭବତଃ ଆଜମୀର ଶିଳାଲେଖାର ପୃଷ୍ଠଭୂମିରେ କୃଷ୍ଣଙ୍କୁ ଅଷ୍ଟମ ଅବତାର ଭାବରେ ଗ୍ରହଣ କରି ରାମ-କୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦନ କରିଛନ୍ତି ।

ମୁର ଚାଣୁର ବିନାଶକ, ରିପୁ ନାଶକ ଏ ।
ସିନ୍ଧୁ ସୂତା ସଂଚାର ! ଜୟ ଜୟ ରାମ ହରେ ।।

ଶ୍ରୀରାମ ଗୀତଗୋବିନ୍ଦମ୍ କାବ୍ୟରେ ମଧ୍ୟ କବିରାଜ ଜୟଦେବ ଦେବ-ମୁନିଙ୍କ ଆକୁଳ ନିବେଦନ ସଂପର୍କରେ ବର୍ଣ୍ଣନା କରିଛନ୍ତି :-

କାଳାମ୍ଭୋ ଦାବଭାସଂ ମଣିମୟ ମୁକୁଟଂ କୁଣ୍ଡଳୋଭାସି ଗଣ୍ଡ ।
କେୟୂରାଽ ପୂର୍ଣ୍ଣ ବାହୁଂ କମଳମସି ଗଦା ଶାର୍ଙ୍ଗଶଙ୍ଖଂ ଦଧାନମ୍ ।।
ସ୍ମେରଂ କୁନ୍ଦାଭଦନ୍ତଂ ସୁରଗଣ ମୁନିଭିର୍ବେଷ୍ଟିତଂ ଚକ୍ରପାଣିଂ ।
ସ୍ବର୍ଜ ଦିବ୍ୟାସନସ୍ଥଂ ହୁତବହସଦୃଶଂ ଦେବ ଦେବଂ ନମାମି ।।

କବିରାଜ ଜୟଦେବ ଉପରୋକ୍ତ ଶ୍ଳୋକରେ ରାମ-କୃଷ୍ଣଙ୍କ ଅଭେଦତ୍ୱ ପ୍ରତିପାଦନ କରିଛନ୍ତି । ପୁନଶ୍ଚ ଶ୍ରୀରାମଚନ୍ଦ୍ରଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ଉଲ୍ଲେଖ କରିଛନ୍ତି :-

ଶ୍ରୀବତ୍ସ ଚିହ୍ନିତ ବକ୍ଷସଂ ସ୍ବର୍ଣ୍ଣୋପବୀତଚିତ୍ତରମ୍ ।
କିଞ୍ଜାଲ୍କ ପୀତଦୂକୁଳ ସଂକୁଳମିନ୍ଦିରା ରମଣମ୍ ।
କେୟୂର କୁଣ୍ଡଳ ମୁକୁଟ କଙ୍କଣ ମୁଦ୍ରିକା ରୁଚିରମ୍ ।।

ଉପରୋକ୍ତ ବର୍ଣ୍ଣନାରେ କବିରାଜ ରାମ-କୃଷ୍ଣଙ୍କ ଅଭେଦତ୍ୱ ପ୍ରତିପାଦନ୍ କରିଯାଇଛନ୍ତି । ପରଂତୁ ଭାରତୀୟ ତଥା ଉତ୍କଳୀୟ କବି, ବିଦ୍ୱାନ, ପଣ୍ଡିତ ବର୍ଗ ମଧ୍ୟ ସେମାନଙ୍କ ସ୍ୱରଚିତ ଦଶାବତାର ସ୍ତୋତ୍ରରେ କୃଷ୍ଣ-ବଳରାମ ତଥା କୃଷ୍ଣଙ୍କୁ ଅଷ୍ଟମ ଅବତାର ଭାବରେ ବର୍ଣ୍ଣନା କରିଛନ୍ତି ।

ସେହିପରି ଦଶମ ଅବତାର କ୍ଷେତ୍ରରେ ମଧ୍ୟ କବିରାଜ ଜୟଦେବ ମ୍ଳେଚ୍ଛାନ ପରିବର୍ତ୍ତେ ଯବନ ଶବ୍ଦର ପ୍ରୟୋଗ କରିଛନ୍ତି :-

ଯବନ ବିଦାରଣ ଦାରୁଣ - ହୟବାହନ ଏ ।
ଧୃତ କରବାଳ କରାଳ- ଜୟ ଜୟ ରାମହରେ ॥

ଭାଗବତ ଶାସ୍ତ୍ରରେ ମଧ୍ୟ ରାକ୍ଷସଙ୍କ ସ୍ଥାନରେ କାଳଯବନ ଶବ୍ଦର ବ୍ୟବହାର କରାଯାଇଛି । ପରିଶେଷରେ ସଂସ୍କୃତିଗତ ବିଭେଦତା ନ ଆଣିବାକୁ କବିରାଜ ଜୟଦେବ ଆହ୍ୱାନ ଦେଇ ଲେଖିଛନ୍ତି :-

ପଠତି ଜନଃ ସୁଚିରଂ ସୁମତି ଜୟଦେବ ବିନିର୍ମିତ ଗୀତମ୍ ।
ପଶ୍ୟତି ନୈବ କଦାଚିଦପି ପ୍ରତିବନ୍ଧକ ସଂସ୍କୃତି ଭୀତମ୍ ॥

**ଚରିତ ଚିତ୍ରଣ :-**

ଶ୍ରୀଗୀତଗୋବିନ୍ଦମ୍ କାବ୍ୟରେ ରାଧା-ମାଧବଙ୍କ ପ୍ରଣୟଚିତ୍ର ବିଶେଷ ଭାବରେ ବର୍ଣ୍ଣିତ, ପରଂତୁ ଶ୍ରୀରାମଗୀତଗୋବିନ୍ଦମ୍ କାବ୍ୟରେ ରାମଚନ୍ଦ୍ରଙ୍କ ଜୀବନଚର୍ଯ୍ୟା ବିଶେଷ ଭାବରେ ବର୍ଣ୍ଣିତ, କିନ୍ତୁ ଉଭୟ କାବ୍ୟର ପ୍ରକୃତି ବର୍ଣ୍ଣନା, ଶବ୍ଦ ସଂଯୋଜନା, ରଚନା ଶୈଳୀ, ମାଧୁର୍ଯ୍ୟମଣ୍ଡିତ କୋମଳ କାନ୍ତ ପଦାବଳୀସମୂହ ଜନମାନସରେ ଅମୃତର ଧାରା ସଂଚାର କରିଥାଏ ।

ଶ୍ରୀଗୀତଗୋବିନ୍ଦ କାବ୍ୟରେ ମାଧବଙ୍କ ରୂପଚର୍ଯ୍ୟା ବର୍ଣ୍ଣନା ସଦୃଶ ଶ୍ରୀମଦ୍‌ରାମଗୀତଗୋବିନ୍ଦ କାବ୍ୟରେ ଶ୍ରୀରାମଙ୍କ ସୌନ୍ଦର୍ଯ୍ୟ, ଆଭୂଷଣ ଆଦିର ବର୍ଣ୍ଣନା ଅତୀବ ଚିତ୍ତାକର୍ଷକ ଓ ରମଣୀୟ ଏବଂ ଉଭୟ କାବ୍ୟର ଭାଷା ବିନ୍ୟାସ, ସଂଗୀତମାଧୁରୀ ଓ ଛନ୍ଦୋବଦ୍ଧ ଶବ୍ଦ ସଂଯୋଜନା ଅତୀବ ରମଣୀୟ :-

ବିପୁଳ ପୁଲକ ଭୁଜପଲ୍ଲବ ବଳୟିତ ବଲ୍ଲବ ଯୁବତି ସହସ୍ରମ୍ ।
କର ଚରଣୋରସି ମଣିଗଣ ଭୂଷଣ କିରଣ ବିଭିନ୍ନ ତମିସ୍ରମ୍ ॥
ଶ୍ରୀ ଜୟଦେବ ଭଣିତ ମତି ସୁନ୍ଦର ମୋହନ ମଧୁରିପୁ ରୂପମ୍ ।
ହରି ଚରଣ ସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତା ମନୁ ରୂପମ୍ ॥

**ଶ୍ରୀ ରାମଗୀତଗୋବିନ୍ଦମ୍ :-**

ନାନା ରତ୍ନ ବିଚିତ୍ର ହିରଣ୍ମୟ ମୁକୁଟ ବିଭାଗ ମଣ୍ଡୋଳମ୍ ।
ମକରାକାର କନକ କୁଣ୍ଡଳ ଯୁଗ ଚଳନ ବିଭାଷି କପୋଳମ୍ ।।
ଶ୍ରୀ ଜୟଦେବ କବେରିଦ ମୁଦୟତି ହରିଚରଣ ସ୍ମୃତି ସାରମ୍ ।
ସୁଖୟତୁ ସାଧୁଜନଂ ସତତଂ କିଲ ଶମୟତୁ ବିଷୟ ବିକାରମ୍ ।।
ଶ୍ରୀ ଜୟଦେବ ବିନିର୍ମିତ ମତିଶୟ ରଘୁପତି ଚରିତ ମନୁପମମ୍ ।
ହରି ଚରଣସ୍ୟ ତନୋତୁ ଶିବଂହୃଦି ମାନସ ହଂସ ସ୍ୱରୂପମ୍ ।।

ଉପରୋକ୍ତ ପଦଭଳି ଅନେକ ପଦର ଶବ୍ଦ ସଂଯୋଜନାର ସାମଞ୍ଜସ୍ୟ ଉଭୟ କାବ୍ୟରେ ପରିଲକ୍ଷିତ ।

ଶ୍ରୀମଦ୍‌ରାମଗୀତଗୋବିନ୍ଦମ୍ କାବ୍ୟରେ ରାମାୟଣର କଥାବସ୍ତୁ ଚୌରାସୀ ଗ୍ରାମର ବାରାହୀ ମନ୍ଦିରରେ ଖୋଦିତ ସଂକ୍ଷିପ୍ତ ସ୍ଥାପତ୍ୟ ଆଧାରରେ ଲିଖିତ, ପରଂତୁ କାବ୍ୟର ଅନ୍ତଃସ୍ୱର ଅତ୍ୟନ୍ତ ମାର୍ମିକ ଓ ହୃଦୟସ୍ପର୍ଶୀ । ଗୀତିକାବ୍ୟର ସାଂଗୀତିକ ଦୃଷ୍ଟିକୋଣରୁ ଭାବ ଗୌଣ ହୋଇଥାଏ । ତେଣୁ କବିରାଜ ଜୟଦେବ ଗୀତିକୁ ମୁଖ୍ୟ ଆଧାରକରି ଶ୍ରୀମଦ୍‌ରାମ ଗୀତଗୋବିନ୍ଦ କାବ୍ୟକୁ ସରସ, ସୁନ୍ଦର, କୋମଳ, ମଧୁର ପଦାବଳୀ ଦ୍ୱାରା ବର୍ଣ୍ଣାଢ଼୍ୟ କରିଯାଇଛନ୍ତି ।

**କାବ୍ୟଧାରା :-**

ଶ୍ରୀଗୀତ ଗୋବିନ୍ଦ କାବ୍ୟକୁ କବିରାଜ ଜୟଦେବ ପ୍ରାଚୀ ସଂସ୍କୃତିର ଦ୍ୱାଦଶ ମାଧବ ସାଂସ୍କୃତିକ ପରଂପରାକୁ ସମ୍ମାନ ଜଣାଇ ଦ୍ୱାଦଶ ସର୍ଗକୁ ଦ୍ୱାଦଶ ମାଧବଙ୍କ ନାମରେ ଭଣିତା କରି ପ୍ରାଚୀ ଦ୍ୱାଦଶମାଧବ ଉପାସନାର ଉତ୍କର୍ଷ ପ୍ରତିପାଦନ କରି ଯାଇଛନ୍ତି । ଶ୍ରୀଗୀତଗୋବିନ୍ଦ କାବ୍ୟକୁ ଦ୍ୱାଦଶ ସର୍ଗ ସହ ୨୪ ଗୋଟି ଗୀତ ଓ ୭୨ ଗୋଟି ଶ୍ଳୋକରେ ସଂଯୋଜନା କରିଥିବା ସ୍ଥଳେ ଶ୍ରୀ ରାମଗୀତଗୋବିନ୍ଦ କାବ୍ୟକୁ ସଂକ୍ଷିପ୍ତ ସ୍ଥାପତ୍ୟ ଆଧାରରେ ୬ ଗୋଟି ସର୍ଗରେ ବର୍ଣ୍ଣନା କରିଥିଲେ ମଧ କାବ୍ୟଟିକୁ ୨୪ ଗୋଟି ଗୀତ ଓ ୭୨ ଗୋଟି ଶ୍ଳୋକରେ ସଂଯୋଜନା କରିଛନ୍ତି । ଗୀତଚୟ ଅଷ୍ଟପଦୀରେ ବର୍ଣ୍ଣିତ, ପରଂତୁ ଶ୍ରୀମଦ୍‌ରାମଗୀତଗୋବିନ୍ଦ କାବ୍ୟର ଅଷ୍ଟପଦୀଚୟ

ଅତ୍ୟନ୍ତ ସରଳ, ସାବଲୀଳ ଓ ବୋଧଗମ୍ୟ, ଯେଉଁଥିରୁ ପ୍ରତୀୟମାନ ଯେ କବିରାଜ ଜୟଦେବ ଶ୍ରୀଗୀତଗୋବିନ୍ଦ କାବ୍ୟ ରଚନା କରିବାର ପରବର୍ତ୍ତି ସମୟରେ ଶ୍ରୀମଦ୍‌ରାମ ଗୀତଗୋବିନ୍ଦମ୍ କାବ୍ୟ ରଚନା କରିଥିଲେ ।

**ଅନ୍ୟାନ୍ୟ କୃତି :-**

ମନରେ ସ୍ୱତଃ ପ୍ରଶ୍ନ ଆସେ ଯେ କବିରାଜ ଜୟଦେବଙ୍କ ଭଳି ଜଣେ ବିଦ୍‌ବତ୍ତାପୂର୍ଣ୍ଣ କବି କ'ଣ ଖଣ୍ଡେ କାବ୍ୟ ରଚନା କରି ତାଙ୍କର ଲେଖନୀ ଚାଳନା ବନ୍ଦ କରିଦେଲେ ? କେତେକ ବିଦ୍ୱାନଙ୍କ ମତରେ କବିରାଜ ଜୟଦେବଙ୍କ ଅନ୍ୟାନ୍ୟ କୃତି ମଧ୍ୟରେ - ପ୍ରସନ୍ନ ରାଘବମ୍, ରାଧା ଗୀତଗୋବିନ୍ଦମ, ସୀତା ଗୀତଗୋବିନ୍ଦମ୍ ଓ ଶ୍ରୀରାମଗୀତଗୋବିନ୍ଦମ୍ ପ୍ରଭୃତି କାବ୍ୟ ମଧ୍ୟ ସୃଷ୍ଟି ସାମଗ୍ରୀ, ଯାହା ଅଦ୍ୟାବଧି ଲୋକଲୋଚନକୁ ଆସିପାରିନାହିଁ, କିମ୍ବା ଉଦ୍ୟମ କରାଯାଇ ନାହିଁ । ଉପରୋକ୍ତ ଆଲୋଚ୍ୟ ବସ୍ତୁକୁ ଅନୁଧ୍ୟାନ କଲେ ସ୍ପଷ୍ଟ ଅନୁମେୟ ଯେ ଶ୍ରୀମଦ୍‌ରାମଗୀତଗୋବିନ୍ଦମ୍ କାବ୍ୟର ରଚୟିତା ଉତ୍କଳୀୟ କବି କବିରାଜ ଜୟଦେବ, ଯେଉଁଥିରେ ଉତ୍କଳୀୟ ସାଂଗୀତିକା ଧାରା ତଥା ଉତ୍କଳୀୟ ସ୍ଥାପତ୍ୟକଳାର ପ୍ରାମାଣିକ ତଥ୍ୟ ଛତ୍ରେ ଛତ୍ରେ ପ୍ରତିବିମ୍ବିତ ଓ ପ୍ରତିଧ୍ୱନିତ ।

ତତ୍‌କାଳୀନ କାବ୍ୟରଚନା ପରଂପରାରେ କବିରାଜ ଜୟଦେବ ଶ୍ରୀରାମ ଗୀତଗୋବିନ୍ଦ କାବ୍ୟର ୨୪ତମ ଗୀତର ଅଷ୍ଟମ ପଦରେ ବର୍ଣ୍ଣନା କରିଯାଇଛନ୍ତି ।

ଶ୍ରୀ କବିରାଜ ଶିରୋମଣି ଦାମଳସଜ ଜୟଦେବୋ ବିଗୀତମ୍ ।
ମୋଦଭରଂ ସୁଜନସ୍ୟ ତନୋତୁ କରୋତୁ ମନୋ ରସନୀତମ୍ ॥

## ପ୍ରାର୍ଥନା

ବନ୍ଦେ ଶାରଦ ପୂର୍ଣ୍ଣ ଚନ୍ଦ୍ର ବଦନଂ ବନ୍ଦେ କୃପାମ୍ଭୋନିଧିମ୍ ।
ବନ୍ଦେ ଶମ୍ଭୁପିନାକ ଖଣ୍ଡନକରଂ ବନ୍ଦେ ସ୍ୱଭକ୍ତ ପ୍ରିୟମ୍ ॥

ବନ୍ଦେ ଲକ୍ଷ୍ମଣ ସଂଯୁତଂ ରଘୁବରଂ ଭୂପାଳ ଚୁଡ଼ାମଣିମ୍ ।
ବନ୍ଦେ ବ୍ରହ୍ମ ପରାତ୍ପରଂ ଗୁଣମୟଂ ଶ୍ରେୟସ୍କରଂଶାଶ୍ୱତମ୍ ॥

**ଉପସଂହାର :**

ଯଦିଓ ଅନେକତ୍ର ମୈଥିଳୀ କବି ଜୟଦେବ ଦୀକ୍ଷିତ୍‌ଙ୍କ ଦ୍ୱାରା ଶ୍ରୀମଦ୍ ରାମଗୀତଗୋବିନ୍ଦମ୍ ରଚିତା ହୋଇଥିବା ଭାରତବର୍ଷର ଅନେକ ବିଦ୍ୱାନ ମତବ୍ୟକ୍ତ କରନ୍ତି, ପରଂତୁ ଏହି ପ୍ରବନ୍ଧରେ ସନ୍ନିବେଶିତ ବିଭିନ୍ନ ପଦାବଳୀ, ଉଭୟ କାବ୍ୟର କାବ୍ୟଧାରାର ସମାନତା, ସଂଗୀତିକ ଧାରା, ସ୍ଥାପତ୍ୟରାଜିର ପ୍ରତିଫଳନ ଓ ଅନ୍ୟାନ୍ୟ ପ୍ରାମାଣିକ ତଥ୍ୟ ଆଧାରରେ ଏହା ନିର୍ବିବାଦୀୟ ଯେ ଉପରୋକ୍ତ କୃତିଟି ଉତ୍କଳୀୟ କବି କବିରାଜ ଜୟଦେବଙ୍କ ଦ୍ୱାରା ରଚିତ । ଏ ସଂପର୍କରେ ଅଧିକ ଆଲୋଚନା ପର୍ଯ୍ୟାଲୋଚନା ତଥା ଗବେଷଣାର ଆବଶ୍ୟକତା ରହିଛି ।

ପ୍ରାଚୀ ସଂସ୍କୃତିର ବାର୍ତ୍ତାବହ କୀର୍ତ୍ତି ରଚି ରାମାୟଣ କଥାସ୍ତୁତି ।
ଭାବେ ହଂସନାଥ ସେ ପାଦଯୁଗଳେ ଭକ୍ତ ଜୟଦେବ କବିପତି ।
ସେ ରଚି ରାମଗୀତି,
ରାମାୟଣ ଗାଥା ପ୍ରସ୍ତରେ ଖୋଦିତ ଧନ୍ୟ ସ୍ଥପତିର କଳାକୃତି ॥

**ଶ୍ରୀ ହଂସନାଥ ସାହୁ**





# ଶ୍ରୀମଦ୍‌ରାମ ଗୀତଗୋବିନ୍ଦମ୍

## ପ୍ରଥମଃ ସର୍ଗଃ

ବର୍ଣ୍ଣିତ ବିଷୟ ବସ୍ତୁ –

ରାବଣ ଅତ୍ୟାଚାରରେ ଅତିଷ୍ଠ ଦେବଗଣଙ୍କ ବ୍ରହ୍ମାଙ୍କ ପୁରକୁ ଗମନ ଓ ସର୍ବ ଦେବଗଣ ମିଳି କ୍ଷୀରାବ୍ଧିଶୟନ ବିଷ୍ଣୁଙ୍କ ନିକଟକୁ ଗମନ ଓ ସ୍ତୁତି । ଅଯୋଧାରେ କୌଶଲ୍ୟାଙ୍କ ଭବନରେ ଶ୍ରୀରାମଙ୍କ ଆବିର୍ଭାବ । ଯଜ୍ଞଚରୁରୁ ଭରତ, ଶତ୍ରୁଘ୍ନ ଓ ଲକ୍ଷଣଙ୍କ ଜନ୍ମ । ଅଯୋଧାରେ ଆନନ୍ଦ ଉତ୍ସବ । ବାସନ୍ତିକ ସୁଷମାରେ ଅଯୋଧାନଗରୀର ଶୋଭା ବର୍ଦ୍ଧନ । ସର୍ବଗୁଣ ସଂପନ୍ନ ଚାରିପୁତ୍ରଙ୍କ ଗହଣରେ ମହାଆନନ୍ଦ ଉଲ୍ଲାସ ମଧ୍ୟରେ ଦଶରଥଙ୍କ ଅବସ୍ଥାନ । ଯଜ୍ଞ ରକ୍ଷା ନିମନ୍ତେ ବିଶ୍ୱାମିତ୍ରଙ୍କ ଅଯୋଧା ଆଗମନ ଓ ଦଶରଥଙ୍କୁ ରାମ, ଲକ୍ଷଣଙ୍କୁ ସଂଗରେ ପଠାଇବାକୁ ଅନୁରୋଧ । ବିଶ୍ୱମିତ୍ରଙ୍କ ସହ ରାମ, ଲକ୍ଷଣଙ୍କ ବନଗମନ । ତାଡକାସୁର ନିଧନ ଓ ବିଶ୍ୱାମିତ୍ରଙ୍କ ଆଶ୍ରମରେ ମୁନିଋଷିମାନଙ୍କ ଗହଣରେ ବିରାଜମାନ ।

x x x

ଗଣାଧୀଶଂ ନମସ୍କୃତ୍ୟ ନମସ୍କୃତ୍ୟାଂଶ୍ଚ ବୈ ଗୁରୂନ୍ ।
କୁର୍ବେ ଶ୍ରୀମଦ୍‌ରାମଗୀତଗୋବିନ୍ଦାର୍ଥବିବର୍ଣ୍ଣନମ୍ ॥

ଅଥାପବର୍ଗାଦି ସମସ୍ତ ପୁରୁଷାର୍ଥ ସାଧନୋତ୍କୃଷ୍ଟତର ଶ୍ରୀମଦ୍ ରାମଗୀତଗୋବିନ୍ଦ ଗୁଣ ବିବର୍ଣ୍ଣନେ ମହତି କର୍ମଣ୍ୟନ୍ତରାୟୋମାଭୂୟାଦିତି ହେତୁ ଶ୍ରୀଜୟଦେବଃ ସ୍ୱେଷ୍ଟ ଦେବତାନୁଧ୍ୟାନ ରୂପମ୍ ।

ଶ୍ୟାମଂ ସହାସ୍ୟବଦନଂ ସରସୀରୁହାକ୍ଷଂ
କେୟୂର କୁଣ୍ଡଳକିରୀଟ ବିରାଜମାନମ୍ ।
କାମାଭିରାମମୁରୁମୌକ୍ତିକଦାମଦୀପ୍ତଂ
ପୀତାମ୍ବରଂ କିମପି ଧାମ ବିଚିନ୍ତୟାମଃ ॥୧॥

ସ୍ମିତହାସ୍ୟ ବଦନ ସରସିଜ ନୟନ କିରୀଟ ଶୋଭା ବିବର୍ଦ୍ଧନ ।
ପୀତାମ୍ବର ସୁନ୍ଦର କେୟୂର କର୍ଣ୍ଣହାର ମୁକ୍ତିପଦ ସେ ଶ୍ୟାମଘନ ।
ସେ କାମାଭିରାମ,
ରୂପ ଜନମୋହନ, ଉରୁମୌକ୍ତିକ ଦାମ ହୃଦେଚିନ୍ତଇ ନିବେଦିଣ ॥୧॥

ସଂସାର ସାଗର ତରୀକୃତ ନାମଧେୟଂ
ଧେୟଂ ସମାଧିରସିକୈ ର୍ମୁନିଭିଃ ସଦୈବ ।
ଦୈବଂ ବିନାଽପି ଦଦତଂ ଶ୍ରିୟମାନତେଭ୍ୟୋ
ବନ୍ଦେବିଭୁଂ ରଘୁପତିଂ କରୁଣୈକ ସୀମମ୍ ॥୨॥

ଭବସାଗର ନାବ ନାମେ ସମାଧିଭାବ ସଦୟ ଚିତ୍ତେ ସେ ରାଘବ ।
ଦୈବୀ ସଂପତ୍ତି ବିଭବ ଯାଭାବେ ମଜ୍ଜିମାନବ ମୁନିଗଣ ହୃଦାରାଧ ଦେବ ।
ସେ କରୁଣାଭବ
ଭକ୍ତଭାବ ଦୀନବନ୍ଧୁ ମୁକ୍ତିପ୍ରଦ ଭବସିନ୍ଧୁ ବନ୍ଦଇ ପ୍ରଭୁ ପଦଯୁଗ ॥୨॥

ବାଲ୍ମୀକିନାଽଽଦ୍ୟ କବିନା ଶତକୋଟିସଂଖ୍ୟଂ
ରାମାୟଣଂ ବିରଚିତଂ ଶଶିମୌଳିନା ଚ ।
କାକେନ ବାୟୁତନୟେନ ତଥାଽପରେଣ
କିଂଚିତ୍‌କରୋତିଜୟଦେବ- କବିଶ୍ଚରିତ୍ରମ୍ ॥୩॥

ବାଲ୍ମୀକି ଆଦିକବି କାକଭୂଷଣ୍ଡିଆଦି ଶତକୋଟୀ ଶାସ୍ତ୍ର ସଂପାଦି ।
ଭକ୍ତକବି ଜୟଦେବ ରାମପାଦପଦ୍ମେ ଭାବ ରାମଗୀତଗୋବିନ୍ଦ ସଂପାଦି ।
ସେ ରାମଗୀତ,
କଥାବସ୍ତୁ ସଂକ୍ଷେପି ରାମପଦାମ୍ବୁଜେ ମତି ସଂକ୍ଷେପେ କୀର୍ତ୍ତି ସଂପାଦିତ ॥୩॥

ଯଦି ରାମ ପଦାମ୍ବୁଜେ ରତି ର୍ଯଦିବା କାବ୍ୟକଳାସୁ କୌତୁକମ୍ ।
ପଠନୀୟମିଦଂ ତଦୌଜସା ରୁଚିରଂଶ୍ରୀଜୟଦେବ ନିର୍ମିତମ୍ ॥୪॥

ଯଦି ରାମ ପଦାମ୍ବୁଜେ ରତି କାବ୍ୟକଳାରେ ସଂପ୍ରୀତିରୁଚିର କାବ୍ୟ କଳାକୃତି ।
ଜୟଦେବ ବିରଚିତ ରାମାୟଣ ସାରତତ୍ତ୍ୱ ପଠନେ ଦିଅ ହେଲେ ମତି ।
ସେ କୌତୁକ କୀର୍ତ୍ତି,
ଦିବ୍ୟ ଶ୍ରୀରାମଚରିତ, ଭାବଭକ୍ତିସମର୍ପିତ ସାଯୁଜ୍ୟ ମୁକ୍ତି ସଂପାଦିତ ॥୪॥

# ଅଥ ଗୀତଂ ପ୍ରଥମମ୍ - ୧

## ମାଳବ ରାଗେଣ - ରୂପକ ତାଳେନ ଗୀୟତେ

ଶ୍ରୁତି ବେଦାଦ୍ୟୁଦ୍ଧାରକ - ଜନ ତାରକ ଏ ।
ଶଙ୍ଖ ଶମନ ସୁରବନ୍ଦ୍ୟ - ଜୟ ଜୟ ରାମ ହରେ ।।୧।।

ନମଦାଖଣ୍ଡଳ ଶେଖର - ଧୃତ ମନ୍ଦର ଏ ।
ସନ୍ତତ. ଜଗଦାଧାର - ଜୟ ଜୟ ରାମହରେ ।।୨।।

ହେମ ନୟନସଂହାରଣ - ଖଳ ଦାରଣ ଏ ।
ଭୁବନାନନ୍ଦ ମୁକୁନ୍ଦ - ଜୟ ଜୟ ରାମ ହରେ ।।୩।।

କନକ କଶିପୁ ଜନୁଧର୍ଷଣ - ଘନ କର୍ଷଣ ଏ ।
ଧୃତ ଜଗତୀବରଭାର - ଜୟ ଜୟ ଦେବହରେ ।।୪।।

ଚରଣ ସଲିଳକୃତ ପାବନ - ବଟୁ ବାମନ ଏ ।
ଅଜିନ ଦଣ୍ଡଧର ଦେବ - ଜୟ ଜୟ ରାମ ହରେ ।।୫।।

କ୍ଷତ୍ରିୟ ବଂଶ ନିସୂଦନ - ଭୃଗୁ ନନ୍ଦନ ଏ ।
କର କୋଦଣ୍ଡ କୁଠାର - ଜୟ ଜୟ ଦେବହରେ ।।୬।।

ବିହିତ ସୁଜନ ସମ୍ଭାବନ - ଜିତ ରାବଣ ଏ ।
ରଘୁକୁଳ କମଳ ଦିନେଶ - ଜୟ ଜୟ ରାମ ହରେ ।।୭।।

ମୁର ଚାଣୁର ବିନାଶକ - ରିପୁ ନାଶକ ଏ ।
ସିନ୍ଧୁ ସୁତା ସଂଚାର - ଜୟ ଜୟ ରାମ ହରେ ।।୮।।

ବେଦ ବିହିତ ବିଧିଖଣ୍ଡନ - ସୁର ମଣ୍ଡନ ଏ ।
ଦନୁଜ ଭେଦକର ଦେବ - ଜୟ ଜୟ ରାମ ହରେ ।।୯।।

ଯବନ ବିଦାରଣ ଦାରୁଣ - ହୟ ବାହନ ଏ ।
ଧୃତ କରବାଳ କରାଳ - ଜୟ ଜୟ ରାମ ହରେ ।।୧୦।।

ଶ୍ରୀଜୟଦେବ ବିଧାୟକ - ଯୁତ ଶାୟକ ଏ ।
କୁରୁ କୁଶଳଂ ପ୍ରଣତେଷୁ - ଜୟ ଜୟ ରାମ ହରେ ॥୧୧॥

ଭୂଭାର ଭଞ୍ଜନ ଭବାବ୍ଧି ବରିଷ୍ଟପୋତ ମାଂ ପାହି କାନ୍ତ କରୁଣାକର ଦିନବନ୍ଧୋ ।
ଶ୍ରୀମଚ୍ଚନ୍ଦ୍ର ରଘୁପୁଙ୍ଗବ ରାବଣାରେ ରାଜାଽଧିରାଜରଘୁନନ୍ଦନ ରାଘବେଶ ॥୫॥

ଭୂଭାର ଭଞ୍ଜନ କାନ୍ତ ଭବାବ୍ଧି ସାଗର ପୋତ କରୁଣାକର ଦୀନନାଥ ।
ରାମ ରଘୁପୁଙ୍ଗବ ରାବଣ ନିଧନ ଦେବ ରାଜାଧିରାଜ ରଘୁନାଥ ।
ସେ ରଘୁଶ୍ରେଷ୍ଠ,
କ୍ଷମ ଅଜ୍ଞାନିଜନ ଦୋଷ ବାରେ ନ ଘେନ ଭବେ ଆଶ୍ରିତ ମୁକ୍ତିପଥ ॥୫॥

ରାବଣାଽଭିଭବ କ୍ଳାନ୍ତା ଦେବା ବ୍ରହ୍ମପୁରୋ ଗମାଃ ।
ଗତାଃ କ୍ଷୀରନିଧେ ସ୍ତୀରଂ ତୁଷ୍ଟୁବୁଃ କମଳାପତିମ୍ ॥୬॥

ରାମଣେ ହୋଇ ଅତିଷ୍ଟ ଦେବକୁଳ ଭୀତତ୍ରସ୍ତ ବ୍ରହ୍ମାପୁରେ ଯାଇ ସେ ମିଳିଣ ।
ବ୍ରହ୍ମାସହ ଦେବଗଣ କ୍ଷୀରସାଗରେ ମିଳିଣ କମଳାପତିଙ୍କୁ ଧାୟିଣ ।
ସେ ଦେବଗଣ,
ଭୁକ୍ତିମୁକ୍ତିପ୍ରଦ କର୍ତ୍ତା ବିନୟେ ଘେନ ଗେ ବାର୍ତ୍ତା ସଦୟେ ସ୍ତୁତି ଆମ୍ଭ ଘେନ ॥୬॥

## ଅଥ ଗୀତଂ ଦ୍ୱିତୀୟମ୍ - ୨

### ବସନ୍ତ ରାଗେଣ-ପ୍ରୀତିମଣ୍ଠ ତାଳେନ

ବନ୍ଦେଽରବିନ୍ଦ ନୟନାମ୍ବୁଦାଭ । କମନୀୟମୂର୍ତ୍ତିଧର ପଦ୍ମନାଭ ॥୧॥
କୋଦଣ୍ଡକଳା କୌତୁକ ନିଧାନ । ପାଖଣ୍ଡ ବିଖଣ୍ଡନ ଗରୁଡ଼ ଯାନ ॥୨॥
କଳ୍ପାନ୍ତ କୋଳ କରୁଣାବତାର । କଲ୍ୟାଣ କମଠ କୃତ କର୍ଣ୍ଣଧାର ॥୩॥
ମାୟାବିଳାସ ନାନା ସ୍ୱରୂପ । ବୃନ୍ଦାଭଦଶନଜଗଦେକ ଭୂପ ॥୪॥
ରାଜାଧିରାଜ ବୀରାଧିବୀର । ରଣକର୍ମ କୁଶଳବଳ ଗୁଣ ଗଭୀର ॥୫॥
ତ୍ରିଶିରଃ ଖରଦୂଷଣ ଦୂଷଣାନ୍ତ । ଅଜ ନିର୍ବ୍ୟଲୀକ ଗୋତୀତ କାନ୍ତ ॥୬॥
ବ୍ରହ୍ମାଦି ଦେବଗଣ ପୂଜ୍ୟପାଦ । ବିଭ୍ରାଜମାନ ବିସ୍ମିତ ବିଷାଦ ॥୭॥
ଜୟଦେବ ଭଣିତି ମୟ ଶସ୍ତ୍ରବର୍ମ । ବିଦଧାତୁ ସଦା ପ୍ରଣତେଷୁ ଶର୍ମ ॥୮॥

କାଳାମ୍ଭୋଦାବଭାସଂ ମଣିମୟ ମୁକୁଟଂ କୁଣ୍ଡଳୋଭାସି ଗଣ୍ଡଂ
କେୟୂରାଃପୂର୍ଣ୍ଣବାହୁଂ କମଳମସି ଗଦାଶାର୍ଙ୍ଗଶଙ୍ଖଂ ଦଧାନମ୍ ॥
ସ୍ମେରଂ କୁନ୍ଦାଭଦନ୍ତଂ ସୁରଗଣ ମୁନିଭିର୍ବେଷ୍ଟିତଂ ଚକ୍ରପାଣିଂ
ସ୍ଫୂର୍ଜଦ୍ଦିବ୍ୟାସନସ୍ଥଂ ହୁତବହସଦୃଶଂ ଦେବ ଦେବଂ ନମାମି ॥୭॥

ପ୍ରଳୟ ସାଗର ବର୍ଣ୍ଣ କେୟୂର କଂକଣମାନ ବାହୁଯୁଗଳ ଦୀପ୍ତିଦାମ ।
ମଣିମୟ ମୁକୁଟ କୁଣ୍ଡଳ ଗଣ୍ଡଶୋଭିତ ଶଙ୍ଖଚକ୍ର ଗଦା ଶାର୍ଙ୍ଗ ଧନୁ ।
ସେ ଭାବଗ୍ରାହୀ,
ଶ୍ୟାମଳ ଶାନ୍ତ ମୂର୍ତ୍ତି ରାମ ॥

ସ୍ମିତହାସ୍ୟ ବଦନ କୁନ୍ଦଦନ୍ତ ଶୋଭନ ମୁନିମାନସ ବିମୋହନ ।
ଦେବମୁନି ବେଷ୍ଟନ ଚକ୍ରଧାରୀ ଶୋଭନ ସ୍ୱର୍ଗୀୟ ଦୀପ୍ତି ଆଭାମାନ ।
ସେ ଦେବଗଣ,
ନାରାୟଣ ପାଦେ ନିବେଦିଣ ॥୭॥

ଇତି ତେଷାଂ ସ୍ତୁତିଂକୃତ୍ୱା ଭଗବାନ୍ ଭକ୍ତବତ୍ସଳଃ ।
ପ୍ରାଦୁରାସୀଦଯୋଧାୟାଂ କୌଶଲ୍ୟାୟାଂ ଶୁଭେଦିନେ ॥୮॥

ଭକ୍ତ ବତ୍ସଳ ହରି ଦେବଗଣ ସ୍ତୁତିସ୍ମରି ଅଯୋଧାପୁରେ ଅବତୀର୍ଣ୍ଣ ।
କୌଶଲ୍ୟା ହୃଦଚନ୍ଦନ ଭକ୍ତ ବତ୍ସଳ ରାମ ଦର୍ଶନ ଅର୍ଥେ ବିଦ୍ୟମାନ ।
ସେ ଅଯୋଧାରେ,
ରାମ ଅଭିରାମ ରୂପରେ ॥୮॥

## ଅଥଗୀତଂ ତୃତୀୟମ୍ - ୩

### ଗୁର୍ଜରୀରାଗେଣ - ରୂପକ ତାଳେନ ଗୀୟତେ ।

ରମ୍ୟ ବାଳରୂପଂ ରାମମଭିରାମମହମୀଡ଼େ ।
ରାବଣାଭିଭବପରତପ୍ତସୁରସିଦ୍ଧଗଣୟାଚିତଂ ଜୟତି ବରମୀଡ଼େ ॥୧॥

ଇନ୍ଦ୍ରନୀଳାଭତନୁମତନୁ ଶତକୋଟି ରୁଚିମିନ୍ଦୁ ମୁଖଚନ୍ଦ୍ର ମୁରୁହାରମ୍ ।
କୌସ୍ତୁଭାମୁକ୍ତ କନ୍ଧରମରୁଣ ପାଣିପାଦମମ୍ବୁରୁହନୟନମଳିତାରମ୍ ॥୨॥

କମ୍ବୁନିଭ କଣ୍ଠମତି ନୀଳଚିକୁରାବଳୀ ବିଜିତଜଳବାହ ସଂଘାତମ୍ ।
ଗୂଢ଼ତର ଜତ୍ରୁ ମାଜାନୁଭୁଜଦଣ୍ଡଧରମୁରସି ଭୃଗୁଚରଣଜଳଜାତମ୍ ।।୩।।

ବିବିଧ ମଣିଚିତ୍ର ହେମାଽଽଭରଣଭୂଷିତଂ ହେତି ସଂବିହିତ ଜୟଗାନମ୍ ।
ମନ୍ଦମନ୍ଦ ସ୍ମିତଂ ବଂଧୁଜୀବାଽଧରଂପନ୍ନଗାମିତ୍ରବରଯାନମ୍ ।।୪।।

କନକମୟ ପଟମଣ୍ଡିତ ଲଲାଟସ୍ଥଳଂ କୁନ୍ଦ କୁଂକୁମାଭରଦଭାସମ୍ ।
ରୁଚିର ମଖସୂତ୍ର ଭୃତମିନ୍ଦିରା ସଂକୁଳଂ ପୀତ କୌଶେୟ ଶୁଭବାସମ୍ ।।୫।।

ସୁଖଦନାସାପୁଟଂ ଶୀଳକରୁଣାକରଂ ସତ୍ୟସଂକଳ୍ପମହିତକଳ୍ପମ୍ ।
ଦାନବାନୀକମତ୍ତେଭପଞ୍ଚାନନଂ ବିହିତପଳଦିବସଯୁଗକଳ୍ପମ୍ ।।୬।।

କୋଶଳାଧୀଶଜାୟାଦିଶିଶୁ ଶୋକହରମଦ୍ଭୁତଂ ବୀକ୍ଷ୍ୟ କୌଶଲ୍ୟା ।
ଅବଦଦିତି ରୂପ ମଧୁନା ଜହିହି କେଶବ ତ୍ରାହି ମାମପଗତଶଲ୍ୟା ।।୭।।

ପଠତି ଯା ଜ୍ଞାନମଜ୍ଞାନତିମିରାପହଂ ବୈଷ୍ଣବଂତ୍ରିଜଗଦତି ସାରମ୍ ।
ଭାବୁକଂ ଚାରୁ ଜୟଦେବ କବି ନିର୍ମିତଂ ଯାତି ଭବସିନ୍ଧୁ ପରପାରମ୍ ।।୮।।

କୈକେୟ୍ୟାଂ ଭରତୋ ଜଜ୍ଞେ ସୁମିତ୍ରାୟାଂ ଯମୌ ସୁତୌ ।
ଶତ୍ରୁଘ୍ନ ଲକ୍ଷ୍ମଣୌ ନାମ ଶରଦିନ୍ଦୁନିଭାନନୌ ।।୯।।

ଯଜ୍ଞଚରୁ ସେବନ ଭରତ ଉତ୍‌ପନ୍ନ କୈକେୟୀ ଉଦରୁ ସମ୍ଭୂତ ।
ସୁମିତ୍ରା ଗର୍ଭ ସମ୍ଭୂତ ଶତ୍ରୁଘ୍ନ ଲକ୍ଷ୍ମଣ ଜାତ ଶରଦଚନ୍ଦ୍ର ଶୋଭାକୃତ ।
ସେ ଭ୍ରାତୃଗଣ,
ଅଯୋଧ୍ୟାପୁର ମଣ୍ଡନ ଦୈବୀଶକ୍ତି ସମ୍ପନ୍ନ ସୌଭାଗ୍ୟ ଅଯୋଧ୍ୟା ରାଜନ ।।୯।।

ନିଦଧ୍ୱନୁର୍ଦୁନ୍ଦୁଭୟଃ ସମନ୍ତାଜ୍ଜୁଗୁଷ୍ଟ ଗନ୍ଧର୍ବଗଣାଃ ପ୍ରବୀଣାଃ ।
ବନଂସପୁଷ୍ପଂ ସରିଦମ୍ବୁପୂର୍ଣ୍ଣାଽସ୍ୟରା ଧରିତ୍ରୀ ବିମଳଂ ନଭଶ୍ଚ ।।୧୦।।

ପୁତ୍ରଜନ୍ମ ସଂବାଦ ଦୁନ୍ଦୁଭି ବାଦ୍ୟନାଦ ଗନ୍ଧର୍ବଗଣ ହୋଇ ପ୍ରୀତ ।
କୁସୁମିତ ଲତାଦ୍ରୁମ ନଦୀ ସରୀତ ଉଦ୍ଦାମ ଧରଣୀ ଶସ୍ୟ ଶ୍ୟାମଳିତ ।
ସେ ଶରଦଶୋଭା,
ପୁଷ୍ପଫଳ ମଣ୍ଡିତ ପ୍ରକୃତି ବିଚିତ୍ରିତ ଆକାଶ ଦିଶେ ମନଲୋଭା ।।୧୦।।

# ଅଥଗୀତଂ ଚତୁର୍ଥମ୍ - ୪

## ଆଶାବରୀ ରାଗେଣ - ରୂପକ ତାଳେନ ଗୀୟତେ

ରାମ ବଦନ ମତି ମଂଜୁ ବିଲୋକୟ
ଶାରଦ କୋଟି ଶଶିନମିବ ନିର୍ମଳ ମକ୍ଷିଚକୋରଂ ରୋପୟ ।।୧।।

ଭୃକୁଟୀ କୁଟିଳ ଧନୁର୍ବଳିତଂ ନବ କୁଂକୁମତିଳକ ଲଲାଟମ୍ ।
ସହୃଦୟ ହୃଦୟ ବିଶୋକକରଂ କରୁଣାମୟନୟନ ବିପାଟମ୍ ।।୨।।

କ୍ଷୀରପୟୋନିଧି ବୀଚି ବିନିନ୍ଦକବିଶଦ ମନୋହର ହାସମ୍ ।
କୁନ୍ଦ କୁସୁମ କମନୀୟ ଲସଦ୍ଦଶନାବଳି କିରଣ ବିକାଶମ୍ ।।୩।।

ନାଗଲତା ରସ ରାଗ ଧରାଧର ପଲ୍ଲବମୟ ହୃଦି ହାସମ୍ ।
କୀର ମୁଖାକୃତି ଧୀର ସୁଗନ୍ଧ ସମୀରଣ ନାସା ବାସମ୍ ।।୪।।

ନାନାରତ୍ନ ବିଚିତ୍ର ହିରଣ୍ମୟ ମୁକୁଟ ବିଭାଗ ମତୋଳମ୍ ।
ମକରାକାର କନକ କୁଣ୍ଡଳଯୁଗ ଚଳନ ବିଭାସି କପୋଳମ୍ ।।୫।।

କମ୍ବୁ ରୁଚିରତର କଣ୍ଠଭୃଦମ୍ବୁଦ ନୀଳ ବିଜୃମ୍ଭିତ କେଶମ୍ ।
ରଘୁକୁଳ କୈରବ କାନନ ନିୟତ ବିକାଶକ ଚାରୁ ନିଶେଶମ୍ ।।୬।।

ମଙ୍ଗଳମୋଦକରଂ ସୁଚିରଂ ନିଜ ଭକ୍ତସତା ମନୁକୂଳମ୍ ।
ଲୋକ ଚତୁର୍ଦ୍ଦଶ ପାଳନ ଦକ୍ଷମପକ୍ଷ ବିନାଶ ମତୁଳମ୍ ।।୭।।

ଶ୍ରୀଜୟଦେବ କବେରିଦ ମୁଦୟତି ହରିଚରଣ ସ୍ମୃତି ସାରମ୍ ।
ସୁଖୟତୁ ସାଧୁଜନଂ ସତତଂ କିଳ ଶମୟତୁ ବିଷୟ ବିକାରମ୍ ।।୮।।

ରରାଜ ଭୂପତିଃ ପୁତ୍ରୈ ଷ୍ଚତୁର୍ଭିର୍ଗୁଣ ଶାଳିଭିଃ ।
ଭୁଜୈରିବାସ୍ତ୍ରକୁଶଳୈ ର୍ଭଗବାନ୍ ଭକ୍ତବତ୍ସଳଃ ।।୧୧।।

ସର୍ବ ବିଷୟ ସଂପନ୍ନ ସର୍ବଗୁଣ ପରିପୂର୍ଣ୍ଣ ଚତୁର୍ଗୁଣରେ ଦୀପ୍ତିମାନ ।
ଅସ୍ତ୍ର ଶସ୍ତ୍ର ନିପୁଣ ଚାରିପୁତ୍ର ସମାନ ଶ୍ରେଷ୍ଠ ଶୋଭନଯେ ଶ୍ରୀରାମ ।
ସେ ରଘୁରାଣ,
ଭକ୍ତ ବତ୍ସଳ ଭଗବାନ ।।୧।।

ମଣିଚିତ୍ର କିରୀଟ ଧାରିଣୋଧନୁରିଷ୍ୱାଶିବଭାସିପାଣୟଃ ।
ଶରଦିନ୍ଦୁ ନିଭାନନା ବଭୁସ୍ତନୟାଭୂମିଭୁଜୋ ମହୌଜସଃ ॥୧୨॥

ମଣିମୟ ମଣ୍ଡନ କିରୀଟ ଶୋଭାବର୍ଦ୍ଧନ ତନୟଗଣ ସୁଶୋଭନ ।
ଧନୁ ଇକ୍ଷୁ, ଅସ୍ତ୍ରଚାଳନ ପାରଦର୍ଶିତାମାନ ଲଭିଲେ ଶିଶୁପୁତ୍ର ଗଣ ।
ସେ ଶରଦ୍‌କାଳୀନ,
ଚନ୍ଦ୍ରମୁଖ ଶୋଭାବର୍ଦ୍ଧନ ॥୧୨॥

ସୁବାହୁ ମୁଖ୍ୟୈ ରଜନୀଚରାଦ୍ୟୈରୁପପ୍ଲୁତୋ ଗାଧିସୁତୋ ମହର୍ଷିଃ ।
ଅଗାଦୟୋଧ୍ୟାଂ ନୃସହସ୍ରସଂକୁଳାଂ ଶିଷ୍ୟାଯୁତୈଃ ପୂରିତପାର୍ଶ୍ୱଭାଗଃ ॥୧୩॥

ସୁବାହୁ ଅସୁରପତି ଅସୁରଗଣଙ୍କ ଭୀତି ଅସହ୍ୟ ବୋଧେ ହୋଇ ଭୀତି ।
ମହର୍ଷି ବିଶ୍ୱାମିତ୍ର ସହସ୍ର ମୁନିଶିଷ୍ୟ ଅଯୋଧ୍ୟାପୁରେ ଉପଗତ ।
ସେ ରାଜଧର୍ମ,
ଧର୍ମ ରକ୍ଷାର ନିବେଦନ ॥୧୩॥

ନନାମ ସାକେତନୃପୋ ମହର୍ଷୟେ
କୃତାଞ୍ଜଳିଃ ପାଦପୟୋ ଜୟୋର୍ଦ୍ଧୃତମ୍ ।
ନିବେଶୟାମାସସୁତୌ ମନୋହରୌ
ପ୍ରସନ୍ନଚିତ୍ତଃ ପ୍ରବଭୂବ ଯୋଗବିତ୍ ॥୧୪॥

ଦଶରଥ ରାଜନ ଦେଖିଣ ମୁନିଗଣ କୃତାଞ୍ଜଳିପୁଟେ ପ୍ରଣାମ ।
ପୁତ୍ର ରାମ-ଲକ୍ଷ୍ମଣ ନିୟୋଜିମୁନିଗଣ ମଜ୍ଜିଲେ ପାଦପ୍ରକ୍ଷାଳନ ।
ସେ ଆନନ୍ଦ ମନ,
ସୌଭାଗ୍ୟ ଅଯୋଧ୍ୟା ରାଜନ ॥୧୪॥

## ଅଥ ଗୀତଂ ପଞ୍ଚମମ୍ - ୫

### ମାଳବରାଗେଣ - ରୂପକ ତାଳେନ ଗୀୟତେ

ରାମଚନ୍ଦ୍ର କରକମଳ ମୁଦାରମ୍,
ଭକ୍ତ ଭଜନୀୟ ମମଳ ମତୁଳିତ ରୁଚିଦମିତଦନୁଜ ପରିବାରମ୍ ।।୧।।
ଧ୍ରୁବପଦମ୍

ଧୃତ କୋଦଣ୍ଡ ବିଶିଖ ମଣିଭୂଷଣ ମରୁଣ ମନୋହରବେଶମ୍ ।
ଭାଗଧେୟ ସୂଚକ ବିଶୁଦ୍ଧତର ବିବିଧ ବର୍ଣ୍ଣ ଶୁଭ ରେଖମ୍ ।।୨।।

ସ୍ଫୁରଦଙ୍ଗୁଳି ନଖରାଜି ବିରାଜିତ ମମରନିକର କୃତରାଗମ୍ ।
ମୁକ୍ତାଦଳ ଭୂଷିତ ଦଳସଂକୁଳ ସରସିଜମିବ ବରଭାଗମ୍ ।।୩।।

ବର ମଭୀଷ୍ଟମଭୟଂ ଦଦଦ୍ଭୁତ ମାଜି କଳାସୁ ପବିନମ୍ ।
ଅରିଷ୍ଟବର୍ଗ ମଧୁପମଦଗଞ୍ଜନମନୁପମମଞ୍ଜନହୀନମ୍ ।।୪।।

ଧର୍ମାଦିକ ଫଳ ନମିତ ମହର୍ନିଶମଜଶଙ୍କର ମୁନି ଗୀତମ୍ ।
କମଳାପାଣି କମଳ ଲାଳିତତମ ମସୁର ବିଘାତ ବିନୀତମ୍ ।।୫।।

କପିଳାଦିକ ସନକାଦି ନିଷେବିତମଶୁଭଶମନମତିଭାରମ୍ ।
ବେଦ ପୁରାଣ ସକଳ ସମ୍ମତମିବ ସାଦିତ ବିଷମ ବିକାରମ୍ ।।୬।।

ଚିନ୍ତାମଣି ସୁରଧେନୁ କଳ୍ପତରୁ କୋଟି ଦାନଗୁଣ ଶୀଳମ୍ ।
ପ୍ରାକୃତ ତତ୍ତ୍ୱ ପ୍ରପଞ୍ଚ ରୋଗହର ମଖିଳ ଚରାଚର ଲୀଳମ୍ ।।୭।।

ଶ୍ରୀ ଜୟଦେବ ଭଣିତ ମତିମଞ୍ଜୁଳ ମଧୁର ମନୋହର ଗାନମ୍ ।
ଦିଶତୁ ସଦା ମଙ୍ଗଳ ମତୁଳିତ ମିତି ପରମାନନ୍ଦ ନିଧାନମ୍ ।।୮।।

x x x

କ୍ଷୁମାପୁଷ୍ପଶ୍ୟାମୋ ବିକଚବିଶଦାମ୍ଭୋଜନୟନଃ ।
ପ୍ରବାଳୋଷ୍ଠୋ ବିଭ୍ରଦ୍ ରୁଚିରତର କୋଦଣ୍ଡ ଭିଦୁରଃ ।।
ପୃଷତ୍କାନ୍ ପାଣିଭ୍ୟାମତିବିମଳମୁକ୍ତାଫଳରଦୋ ।
ମହାବୀରୋ ଧୀରୋମନସି ରଘୁବୀରୋ ନିବସତାମ୍ ।।୧୫।।

ଅତସୀ କୁସୁମ ଦାମ ତନୁ ଶ୍ୟାମଳବର୍ଣ୍ଣ ନୀଳପଦ୍ମନେତ୍ର ଶୋଭନ ।
ପ୍ରବାଳଦୃଶାଓଷ୍ଠ ତେଜୀୟାନ ବଳିଷ୍ଠ ଧନୁର୍ବାଣ କରେ ମଣ୍ଡନ ।
ସେ ଦନ୍ତ ମୁକ୍ତାଦାମ
ମହାବୀର ରଘୁବୀର ଜ୍ଞାନଗୁଣ ସାଗର ନିବାସ କରୁ ହୃଦମନ ॥୧୫॥

**ରାଜ ବ୍ରହ୍ମ ମହର୍ଷିଭ୍ୟୋ ରଜଷିତ୍ରମିଦଂ ତପଃ ।**
**ରାଜନ୍ତେ ଯେନ ରାମାଦ୍ୟା ବ୍ରହ୍ମେଶା ଲୋକଶାସିନଃ ॥୧୬॥**

ଧନ୍ୟ ହେଲ ରାଜନ ପୁତ୍ର ପ୍ରାପ୍ତିର ପୁଣ୍ୟ ବିସ୍ମିତ କରେ ମୁନିଜନ ।
ତପ ସିଦ୍ଧିର ପୁଣ୍ୟ ବୈଦିକ ଦେବସମାନ ଲୋକପାଳ ତୁଲ୍ୟନନ୍ଦନ ।
ସେ ନୟନାଭିରାମ,
ଆଜ୍ଞା ହେଉ ବହନ ଯିବେ ରାମଲକ୍ଷ୍ମଣ ଯାଗଯଜ୍ଞ ରକ୍ଷା କାରଣ ॥୧୬॥

**କସ୍ତୂରିକା ଶ୍ୟାମଳ ଚାରୁବେଶଂ କିରୀଟ ମାଭୂଷିତ ଭାଲଦେଶମ୍ ।**
**ଶ୍ରୀରାମଚନ୍ଦ୍ରଂ ନୃପଦେହି ମହ୍ୟଂସଲକ୍ଷଣଂ ରକ୍ଷତୁ ଯଜ୍ଞମୁଗ୍ରମ୍ ॥୧୭॥**

ଶ୍ୟାମଳ ସୁନ୍ଦର କେଶ କସ୍ତୂରୀ ଦୋଳାୟିତ କିରୀଟ ଭୂଷିତ ମସ୍ତକ ।
ରାମ-ଲକ୍ଷ୍ମଣ ସହିତ ଆଜ୍ଞା ହେଉ ତ୍ୱରିତ ମୋ ସଂଗେ ଯିବାକୁ ତ୍ୱରିତ ।
ସେ ଯଜ୍ଞ ରକ୍ଷାଅର୍ଥ,
ରାକ୍ଷସ ଅତ୍ୟାଚାର ବେଳୁଁ ବେଳ ପ୍ରବଳ ଯଜ୍ଞରକ୍ଷା କାର୍ଯ୍ୟ ବିହିତ ॥୧୭॥

**କ୍ଷମାପାଳଃ କାଳୋଭଟ ଦନୁଜ ଜାଲୋତଚ୍ଛିତଶିର -**
**ଶ୍ଛିଦଦ୍ୱାଣୋଦ୍‌ବାହୁର୍ଗୁରୁକଥିତଜନ୍ମାନ୍ତରକଥଃ ॥**
**ଅଦାଦ୍ରାମଂ ଶ୍ୟାମଂ ଜଳଦମିବ ସୌମିତ୍ର୍ୟନୁଚରଂ ।**
**ସମାଶ୍ଳିଷ୍ୟ ପ୍ରାୟଃ କୁଶିକତନୟୋଽଥାଶ୍ରୁନୟନଃ ॥୧୮॥**

ପ୍ରବଳ ପ୍ରତାପୀ ବୀର ଦାନବ ବାହୁଶୀର ଅକ୍ଲେଶେ ବଧିଲେ ଅସୁର ।
ଶୁଣି ଜନ୍ମଜନ୍ମାନ୍ତର ବୃତ୍ତାନ୍ତ ଅସୁରଙ୍କର ଶ୍ରୀମୁଖୁ ବିଶ୍ୱାମିତ୍ରଙ୍କର ।
ସେ ଶ୍ରୀରାମ-ଲକ୍ଷ୍ମଣ,
କ୍ଷମାପାଳ ଶ୍ରୀରାମ ବିଶ୍ୱାମିତ୍ରେ ଆଲିଙ୍ଗନ ଆନନ୍ଦାଶ୍ରୁ ସ୍ଫୁରେ ନୟନ ॥୧୮॥

x x x

ହତ୍ୱା ମାର୍ଗେ ମାର୍ଗଣେନ ତାଡ଼କାଂ ଲୋକ ତାଡ଼କାମ୍ ।
ଯଯୌ ତପୋବନଂ ରାମୋ ମହର୍ଷେ ର୍ଗାଧି ଜନ୍ମନଃ ॥୧୯॥

ପଥେ ଲୋକ ଭୟଙ୍କର ତାଡ଼କା ନାମେ ଅସୁର ଶରେ ଛେଦିଲେ ତାର ଶିର ।
ଅସୁରବଧି ଶ୍ରୀରାମ ବିଶ୍ୱାମିତ୍ର ତପୋବନ ପ୍ରବେଶ ହେଲେ ଆଶ୍ରମର ।
ସେ ପଥ ଶ୍ରମଭାର,
ଆଶ୍ରମେ ପ୍ରବେଶ କରି ଶ୍ରମଭାର ନିବାରି ପ୍ରବେଶ ମୁନି ସମୀପର ॥୧୯॥

ବୈଦୂର୍ଯ୍ୟ ଦ୍ୟୁତିମିନ୍ଦୁସୁନ୍ଦର ମୁଖଂ ପୂର୍ଣ୍ଣେନ୍ଦୁ ତୂଣୀଯୁଗଂ ।
ମୁକ୍ତାହାରକିରୀଟରତ୍ନବିଳସତ୍ସ୍ୱର୍ଣ୍ଣାଙ୍ଗଦାଳଂ କୃତମ୍ ॥
ସ୍ଫୂର୍ଜଦ୍‌ବାଣ ଧନୁର୍ଦ୍ଧରଂ ରଘୁବରଂ ସଂବୀକ୍ଷ୍ୟ ସଭ୍ରାତରଂ ।
ପ୍ରେକ୍ଷନ୍ତଂ ସିରତାରକା ମୁନି ବରାଶ୍ଚନ୍ଦ୍ରଂ ଚକୋରାଇବ ॥୨୦॥

ବୈଦୂର୍ଯ୍ୟ ତେଜ ଆନନ ଚନ୍ଦ୍ର ସୁନ୍ଦର ବଦନ ତୁଣୀର ବାଣେ ପରିପୂର୍ଣ୍ଣ ।
ବକ୍ଷେ ମୁକ୍ତାହାର ମଣ୍ଡିତ ମୁକୁଟ ରତ୍ନ ଖଚିତ ସ୍ୱର୍ଣ୍ଣାଳଙ୍କାର ବିମଣ୍ଡିତ ।
ସେ ରୂପ ଶୋଭା,
ଉପମା ଅତି ମନଲୋଭା ॥

ତୋଜୋମୟ ଶକ୍ତି ସଂଯୁକ୍ତ ଧନୁର୍ବାଣ ଶୋଭିତ ସଂଗେ ଲକ୍ଷ୍ମଣ ଉପସ୍ଥିତ ।
ମୁନିଗଣ ବେଷ୍ଟିତ ରଘୁବୀର ପରିତ ତାରକା ଚନ୍ଦ୍ରକାନ୍ତି ଯୁକ୍ତ ।
ସେ ଚକୋରବତ,
ଆନନ୍ଦମନେ ଉପଗତ ॥୨୦॥

ଇତି ଶ୍ରୀମଦ୍ ରାମଗୀତଗୋବିନ୍ଦେ ମହାକାବ୍ୟେ ଶ୍ରୀଜୟଦେବକୃତୌ
ସାନନ୍ଦ ରଘୁନନ୍ଦନୋ ନାମ ପ୍ରଥମଃ ସର୍ଗଃ ।



# ଦ୍ୱିତୀୟଃ ସର୍ଗଃ

## ବର୍ଣ୍ଣିତ ବିଷୟ ବସ୍ତୁ –

ସୁବାହୁ, ମାରୀଚ ପ୍ରଭୃତି ଅସୁର ନିଧନ ଓ ମୁନିଋଷିଙ୍କ ଯଜ୍ଞ ରକ୍ଷା । ରାଜା ଜନକଙ୍କ ଆମନ୍ତ୍ରଣ କ୍ରମେ ବିଶ୍ୱାମିତ୍ରଙ୍କ ସହ ରାମ, ଲକ୍ଷ୍ମଣଙ୍କ ମିଥିଳାପୁର ଗମନ । ପଥରେ ଅହଲ୍ୟା ଉଦ୍ଧାରଣ, ଗଙ୍ଗାସ୍ନାନ ଓ ପ୍ରଣାମ ପୂର୍ବକ ମିଥିଳାପୁର ଗମନ । ରାମ, ଲକ୍ଷଣଙ୍କ ସହ ଜନକରାଜାଙ୍କୁ ବିଶ୍ୱାମିତ୍ରଙ୍କ ପରିଚୟ ପ୍ରଦାନ । ଉତ୍ସୁକତା ସହ ରାଜନ୍ୟବର୍ଗଙ୍କ ଅପରାଜେୟ ପୀନାକ ଧନୁ ଦର୍ଶନ ଓ ଧନୁଭଙ୍ଗ । ପରଶୁରାମଙ୍କ ପ୍ରବେଶ, କ୍ରୋଧ ଓ ଆହ୍ୱାନ । ପରଶୁରାମଙ୍କ ମୋହଭଙ୍ଗ ଓ ବନଗମନ । ଜନକଙ୍କ ନିର୍ଦ୍ଦେଶରେ ବିଶ୍ୱାମିତ୍ର, ରାମ, ଲକ୍ଷଣଙ୍କୁ ଶତାନନ୍ଦଙ୍କ ଅତିଥି ସତ୍କାର ।

ରାମଚନ୍ଦ୍ରଂ ସମାଲୋକ୍ୟ ମୁନୟୋ ବନବାସିନଃ ।
ଯୋଗଂ ବିସ୍ମୃତ୍ୟ ସହସା ଚକ୍ରୁଃ ସ୍ତୁତିମନେକଧା ॥୧॥

ଲଭି ଶ୍ରୀରାମ ଦର୍ଶନ – ବନବାସୀ ମୁନିଗଣ
ଆନନ୍ଦେ ହୋଇଲେ ମଗନ ।
ତେଜି ଯଜ୍ଞ-ତପ କର୍ମ-ଧ୍ୟାନ ଯୋଗ ସାଧନ
ନିବେଦି ରାମ ସ୍ତୁତି ଗାନ ॥୧॥

ଅଥ ଗୀତଂ ଷଷ୍ଠମ୍ – ୬
ରାମକରୀରାଗେଣ – ରୂପକ ତାଳେନ ଗୀୟତେ ।

ପ୍ରଣମାମି ରାମ ମନୁତ୍ତମଂ ମନୁବଂଶ କଞ୍ଜରବିମ୍ ।
କନ୍ଦର୍ପ କୋଟି ସମାନ ସୁନ୍ଦର ରୂପ ମାଦି କବିମ୍ ॥୧॥ ଧ୍ରୁବପଦମ୍ ।

ବ୍ରହ୍ମାଭିଧାନ ମଲେପ ମଜମଦ୍ୱୈତପ୍ରଳୟମ୍ ।
ସଦ୍ରୂପବନ୍ତମବାଧିତଂ ଚିନ୍ମାତ୍ରମଥମୁଶ୍ରୟମ୍ ॥୨॥

ସତ୍ୟ ସ୍ୱରୂପମୟମକ୍ଷରମପ୍ରପଞ୍ଚମ୍ ।
ଅବ୍ୟକ୍ତମପ୍ରତିମ ନିରମହମଖଣ୍ଡମୀଶମତମ୍ ॥୩॥

ସ୍ମୃତି ବେଦହର ଶଙ୍ଖାସୁର ପ୍ରତିଘାତ ଦକ୍ଷ ତରମ୍ ।
କ୍ଷୀରୋଦ ମଥନ ମହାଗମନ୍ଦର ପୃଷ୍ଠଭାଗ ଧରମ୍ ॥୪॥

ଉତ୍ତୁଙ୍ଗ ରଦ ଶିଖରେଣ ଚାୟତଭୂମି ତୂଳ କରମ୍ ।
ପ୍ରହ୍ଲାଦ ପାଳକମସୁର କାଳକମଭ୍ରଭେଦ ଧରମ୍ ॥୫॥

କୋଦଣ୍ଡ ବାଣ କୁଠାର କରତଳ ମଖିଳ ବାହୁଜହମ୍ ।
ସାକେତ ଭୂପତି ନନ୍ଦନଂ ସତ୍ୟାଦି ବାହୁ ବହମ୍ ॥୬॥

ଜଳଦାଭମିନ୍ଦୁ ନିଭାନନଂ କିଞ୍ଜଲ୍କପୀତପଟମ୍ ।
ମଣିଚିତ୍ର ହେମକିରୀଟଭୂଷିତ ଚାରୁ ଭାଲତଟମ୍ ॥୭॥

ଇତି ପଠତି ଯୋ ରଘୁବୀର ବର୍ଣ୍ଣନମୁଜ୍ଜ୍ୱଳଂ ସୁଚିରମ୍ ।
ଜୟଦେବ ନିର୍ମିତମିତ୍ୟନୁପମମେତି ମୋଦଭରମ୍ ॥୮॥

ପ୍ରାପ୍ୟ ନୈଶାଚରିଂ ସେନାଂଶ୍ୟେନାଳି ଚଳଦଂଶୁକାଃ ।
ମାରୀଚ ପ୍ରମୁଖା ଭୀମା ବବୃଷୁ ରୁଧିରଂ ଭୃଶମ୍ ॥୨॥

ଭୟଙ୍କର ମାରୀଚ ଅଶେଷ ଅସୁରଯୂଥ
ଶ୍ୟେନ ପକ୍ଷୀ ରୂପ ଧରିଣ ।
ମାୟାରୂପ ଧରିଣ କରନ୍ତି ରକ୍ତ ବର୍ଷଣ
ଯଜ୍ଞ ବିନାଶିଲେ ତକ୍ଷଣ ॥୨॥

ମାରୀଚଂ ମାରୟାମାସ ବାୟବ୍ୟାସ୍ତ୍ରେଣ ରାଘବଃ
ଅତ୍ୟନ୍ତ ବ୍ୟାକୁଲୋ ଭୂତ୍ୱା ଯଯୌ ସାଗରସନ୍ନିଧିମ୍ ॥୩॥

ବାୟବ୍ୟ ଅସ୍ତ୍ର ପେଷିଣ ଚିନ୍ତିମାରୀଚ ନିଧନ
ନିକ୍ଷେପ କଲେ ରଘୁରାଣ ।
ହୋଇ ବ୍ୟାକୁଳିତ ପ୍ରାଣ-ମୃତ୍ୟୁଭୟ ଆସନ୍ନ
ସମୁଦ୍ର ତଟେରହେ ଲୁଚିଣ ॥୩॥

ଦଦାହ ପାବକାସ୍ତ୍ରେଣ ସୁବାହୁଂ ନାମ ରାକ୍ଷସମ୍ ।
ଶେଷାସ୍ତମୀଚରାସ୍ତତ୍ର ଲକ୍ଷଣେନ ନିପାତିତାଃ ॥୪॥

ଆଗ୍ନେୟାସ୍ତ୍ର ପେଷିଣ ସୁବାହୁ ରାକ୍ଷସ ହୀନ
ରାଘବ ନିଶେଷିଲେ ପ୍ରାଣ ।
ଅଶେଷ ରାକ୍ଷସ ଗଣ ଲକ୍ଷ୍ମଣ କରି ନିଧନ
ସ୍ଥାପିଲେ ଯାଗଯଜ୍ଞମାନ ॥୪॥

ପ୍ରତିଚଚାଲ ପୁରୀଂମିଥିଲାମଥୋ ଦଶରଥ ପ୍ରଭାବାନୁ ଗତୋ ମୁନିଃ ।
ଗିରିଶ କାର୍ମୁକ ଭଂଗ ମହେକ୍ଷଣଂ କ୍ଷିତିଭୁତା ଜନକେନ ନିମନ୍ତ୍ରିତଃ ॥୫॥

ଜନକ ନିମନ୍ତ୍ରଣ - ମିଥିଳାପୁର ଗମନ
ବିଶ୍ୱାମିତ୍ର ରାମ ଲକ୍ଷ୍ମଣ ।
ଶିବଧନୁ ଭଂଗ ପୁଣ୍ୟ ସୀତାସ୍ୱୟମ୍ବର ପଣ
ଜନକ ରାଜାଙ୍କ ନିଦାନ ॥୫॥

ଗୌତମୀଂ ତାରୟିତ୍ୱାଦୌ ନମସ୍କୃତ୍ୟ ଚ ଜାହ୍ନବୀମ୍ ।
ଦଦର୍ଶ ମିଥିଳାଂ ପୁଣ୍ୟାଂ ଜନକେନାଭିପାଳିତାମ୍ ॥୬॥

ଅହଲ୍ୟା ଉଦ୍ଧାରଣ ଜାହ୍ନବୀ ଜଳେ ତର୍ପଣ
ଜାହ୍ନବୀ ପଦେ ନିବେଦନ ।
ପବିତ୍ର ମିଥିଳାପୁର ଜନକ ଯା' କର୍ଣ୍ଣଧାର
ପ୍ରବେଶ ମିଥିଳା ଭୁବନ ॥୬॥

## ଅଥ ଗୀତଂ - ସପ୍ତମମ୍ - ୭

### ଶାବରୀରାଗେଣ - ରୂପକତାଳେନ

ଜୟତି ବିଦେହ ନଗର ମନୁରୂପମ୍ ।
ଦିଶିଦିଶି ରାଜମାନଚାମୀକରରଚିତ ବିବିଧମଣିଯୂପମ୍ ॥୧॥ ଧ୍ରୁବପଦମ୍ ।

ରୁଚିର ଲତାତରୁ ସୁମନ ବାଟିକା ବାପୀ କୂପ ତଡ଼ାଗମ୍ ।
ବପ୍ରବଳୟ ପରିଖାବୃତମଭିନବଚିତ୍ରୋଦୟମନୁରାଗମ୍ ॥୨॥

ଶେଷ ଭୟଙ୍କର ବେଶ ନୃପତି ଦୁର୍ଦ୍ଧର୍ଷ ମହେଶ ପିନାକମ୍ ।
ମଣିମୟ ସୌଧ ସମୂହ ମୁଦଗ୍ରମରୁଚ୍ଚଳବିଶଦପତାକମ୍ ॥୩॥

ତୋରଣ ନିକର କିରଣ ସଞ୍ଚାର ବିନିନ୍ଦିତ ସୁରପତି ଚାପମ୍ ।
ଆହୁତିଗନ୍ଧ ସହିତମଖଧୂମବିଧୂତ ସକଳଜନ ପାପମ୍ ॥୪॥

ଗଜ ରଥ ତୁରଗ ପଦାତି ବିଘଟ ବିଶୃଙ୍ଖଳ ଶବ୍ଦ ମୁଦାରମ୍ ।
ଶାରଦ ବିଧୁ ସଂକାଶ ବିକାଶ କନକ କଳଶାଶ୍ରିତ ତାରମ୍ ॥୫॥

ପଣ୍ଡିତ ସୁମତି ସୁଶୀଳ ସୁଧର୍ମ ସୁକର୍ମ ମନୁଜ ପରିବାରମ୍ ।
ପତି ପଦପଦ୍ମ ନିହିତନିଜଚିତ୍ତଚତୁରସୁନ୍ଦରପୁରଦାରମ୍ ॥୬॥

ସୁଖଦ ବିତାନ ମନେକ ତପୋଧନ ଭୂଷିତ ମତିଶୟ ଲୋଭମ୍ ।
ପଙ୍କଜଯୋନିବିନିର୍ମିତମିବ କୃତ ସନ୍ତତ ମାନ ସଲୋଭମ୍ ॥୭॥

ଶ୍ରୀ ଜୟଦେବ କବେ ରୁଦିତଂ ମିଥିଳାପୁରଗୀତମଶୋକମ୍ ।
ମଙ୍ଗଳ ମୋଦଭରେଣ କରୋତୁ ସଦାମୁଦିତ ଜନଲୋକମ୍ ॥୮॥

ଅର୍ଭକଦ୍ୱୟ ମବେକ୍ଷ୍ୟ ମୈଥିଳଃ ସିଂହସଂହନନମାତ୍ତକାର୍ମୁକମ୍ ।
ଗାଧିନନ୍ଦନ ମୁବାଚ ସାଦରଂ କସ୍ୟ ନାଥ ତନୟୌ ସୁଲକ୍ଷଣୌ ॥୭॥

ଶୁଭ ଲକ୍ଷଣ ସଂଯୁକ୍ତ କୁଶଳୀ ସିଂହ ସଦୃଶ,
ଧନୁର୍ଦ୍ଧାରୀ ଏ ବୀର ପୁତ୍ର ।
ବିଶ୍ୱାମିତ୍ରଙ୍କୁ ଜନକ ବିସ୍ମିତେ ପୁଚ୍ଛେ ତ୍ୱରିତ,
କାହାନନ୍ଦନ ଏ ଦୁଇ ଭ୍ରାତ ॥୭॥

ଅଯୋଧ୍ୟାଧିପତିର୍ବୀରୋ ରାଜା ଦଶରଥାଭିଧଃ ।
ତସ୍ୟୈତୌ ତନୟୌ ଭୂପ ପ୍ରସିଦ୍ଧୌ ରାମଲକ୍ଷ୍ମଣୌ ॥୮॥

ଅଯୋଧ୍ୟାଧିପତି ବୀର ଦଶରଥଙ୍କ କୁମର
ନାମ ଯା' ଶ୍ରୀରାମ ଲକ୍ଷ୍ମଣ ।
ସର୍ବଗୁଣ ସଂଯୁକ୍ତ ଦଶରଥ କୋଳ ମଣ୍ଡିତ
ବ୍ରହ୍ମାଣ୍ଡେ କୀର୍ତ୍ତି ବିସ୍ତାରିତ ॥୮॥

କୁତ୍ର ମାହେଶ୍ୱରଂ ଚାପଂ ସର୍ବରାଜମଦାପହମ୍ ।
ଦର୍ଶୟାଶୁ ମହାରାଜ ରାଘବାୟ ମହାତ୍ମନେ ॥୯॥

ଗୁଣ ସନ୍ଧାନେ ପରାସ୍ତ ସମସ୍ତ ରାଜନ୍ୟ ତ୍ରସ୍ତ
ବିସ୍ମୟ ମୋର ହୃଦପ୍ରାଣ ।
ତ୍ୱରିତ ନେଇ ଶ୍ରୀରାମ ଧନୁଭଙ୍ଗ ପୁଣ୍ୟସ୍ଥାନ,
ସଂଚାର ମୋର ହୃଦେପ୍ରାଣ ॥୯॥

ଆଦାୟ ଦକ୍ଷିଣେ ପାଣୌ ମହାବୀର ରଘୂତ୍ତମଃ ।
ଖଣ୍ଡୟାମାସ କୋଦଣ୍ଡମିକ୍ଷୁଦଣ୍ଡମିବ ଦ୍ୱିପଃ ॥୧୦॥

ମହାବୀର ରଘୁନାଥ ଦକ୍ଷିଣ ହସ୍ତେ ତ୍ୱରିତ
ଧନୁଧରି ହେଲେ ବିସ୍ମିତ ।
ହସ୍ତୀ ଇକ୍ଷୁଦଣ୍ଡ ସମ ଟଙ୍କାରୀ ଧନୁ ପୀନାକ
ଅକ୍ଳେଶେ ଭାଙ୍ଗି ରଘୁନାଥ ॥୧୦॥

ରଘୁବର ଭୁଜଦଣ୍ଡ ଖଣ୍ଡିତସ୍ୟ ତ୍ରିପୁରରିପୋ ର୍ଧନୁଷଃ ପ୍ରଚଣ୍ଡଘୋଷଃ ।
ପ୍ରସରତି ଧରଣୀ ନଭୋଽନ୍ତରାଳେ ମୁଖରିତ ଦିଗ୍‌ବିଜୟୋଦୟୈଽସୌ ॥୧୧॥

ଶ୍ରୀରାମ ରଘୁପୁଙ୍ଗବ ଭାଙ୍ଗିଧନୁ ପିନାକ
ପ୍ରଚଣ୍ଡ ଘୋଷ ନିନାଦିତ ।
ଆକାଶ ପ୍ରତିଧ୍ୱନିତ ପୃଥିବୀ ପ୍ରକମ୍ପିତ
ରାମ ବିଜୟ ନିର୍ଘୋଷିତ ॥୧୧॥

## ଅଷ୍ଟ ଗୀତଂ ଅଷ୍ଟମମ୍ - ୮

### ଶାବରୀ ରାଗେଣ-ରୂପକ ତାଳେନ ଗୀୟତେ

ପରଶୁରାମ ଅବଲୋକ୍ୟ ସକୋପମ୍ ।
ରଘୁପତିରଭିଜହର୍ଷ ଯୁଗବାହୁବିହିତବହୁବାହୁଜଲୋପମ୍ ॥୧॥

ଭୃକୁଟୀ କୁଟିଳ ମରୁଣ ବଦନଂ ରଦଖଣ୍ଡିତରଦପରିଧାନମ୍ ।
ଦଧତମିବ ଦ୍ୱିମଣିଂ ଶଶିନଂ ସକୁଜଂ ସସିତଂ କୃତମାନମ୍ ॥୨॥

ରୁଚିର ଜଟାମୁକୁଟ ଦ୍ୟୁତିପୁଞ୍ଜ ବିଭାସି ମନୋହର ଭାଲମ୍ ।
ପାଣି ସରୋଜ ନିହିତ ଶରଚାପ କୁଠାର ମତୀବ କରାଳମ୍ ॥୩॥

ଏକ ବିଂଶତିବାର ମହାବିଜୟସ୍ଫୁଟଶଂ ଗଜଲେଖମ୍ ।
ଭୂତି ବିଭୂଷିତ ବିଗ୍ରହଭାଗନୁପମରୂପମଶେଷମ୍ ॥୪॥

ଲଳିତ ସୁମେରୁ ବଳୟ ପରିବୀତମୁମାପତି ଶିଷ୍ୟ ମୁଦାରମ୍ ।
ଚନ୍ଦ୍ର ବିଶଦ ମଖତନ୍ତୁ ସମେତମଳିପ୍ରଭ ନିଷ୍କଳ ତାରମ୍ ॥୫॥

ଅସ୍ତ୍ର ଶସ୍ତ୍ର ସମ୍ଭୂତ ମହାବ୍ରଣ ବକ୍ଷସମାହବଧୀରମ୍ ।
କଟିତଟ ଯୁଗଳ ନିଷଙ୍ଗଧରଂ ଜଳବାହକ ଶବ୍ଦ ଗଭୀରମ୍ ॥୬॥

ଶିବଶିବ ଶିବ ଶିବ ମନ୍ତ୍ର ମମୁଂ ଜପମାନ ମରିକ୍ଷୟ ହେତୁମ୍ ।
ଦର୍ଭପଟୀ ମୃଗଚର୍ମ ଯୁତଂ ଭୃଗୁବଂଶ ମନୁତ୍ତମ କେତୁମ୍ ॥୭॥

ଶ୍ରୀଜୟଦେବ କବେ ରୁଦିତଂ ଦ୍ୱିଜରାଜ ମହାଭଟ ରୂପମ୍ ।
ପୁରୟତୁ ପ୍ରଣତସ୍ୟ ଜନସ୍ୟ ମନୋରଥ ମାମନୁରୂପମ୍ ॥୮॥

x x x

ନାଟ୍ୟାରଂ ପ୍ରକରୋତୁ କାର୍ମୁକଲତା ବିନ୍ୟସ୍ତ ହସ୍ତାମ୍ବୁଜଃ
କିଂଚିତ୍ ପାଟଳଭାସି ଲୋଚନଯୁଗେ ତାବନ୍ନିମେଷୋଦୟାନ୍ ॥
ଯାବଚ୍ଛାୟକ କୋଟି ପାଟିତରିପୁକ୍ଷ୍ମାପାଳମୌଳି ସ୍ଖଳନ୍ ।
ମଲ୍ଲୀମାଲ୍ୟପତତ୍ପରାଗପଟଳୈଃ ନାଽଽମୋଦିତା ମେଦିନୀ ॥୧୨॥

ନାଟକୀୟ ଠାଣିରେ କାର୍ମୁକ ଲତା ଟଂକାରେ
ସ୍ମିତ ହାସ୍ୟ ପଦ୍ମ ଲୋଚନ ।
ହସ୍ତ ପଦ୍ମେ ଧାରଣ ଧନୁଟଂକାରୀ ବାଣ
ରାଜନ୍ୟ ର୍ଗବ କରି ଚୂର୍ଣ୍ଣ ।
ସେ ଭୂପତନ,
ମଲ୍ଲୀପୁଷ୍ପ ମାଲ୍ୟ ଦୃଶା ପୀନାକବିଖଣ୍ଡିତା ମେଦିନୀ ଶାନ୍ତ ସ୍ନିଗ୍ଧ ମନ ॥୧୨॥

ଶ୍ରୁତ୍ୱା ରାମଦେବଃ -

ଭୃଗୁତିଳକ ନମସ୍ତେ ଯୋଗିନାମଗ୍ରଗଣ୍ୟ ।
ତ୍ରିପୁର ହର ସୁଶିଷ୍ୟ ଶ୍ରୀପତେଃ ଷଷ୍ଠ ମୂର୍ତ୍ତେ ॥
ବିତରମୟି ସୁଦୃଷ୍ଟିଂ ପ୍ରେମପୂର୍ଣ୍ଣାଂ ମହର୍ଷେ
ଜହିହି ପ୍ରବଳରୋଷଂ ଦୋଷଭୂତଂ ସଦୈବ ॥୧୩॥

ଭୃଗୁଶ୍ରେଷ୍ଠ ମୁନିପୁଙ୍ଗବ ଷଷ୍ଠ ବିଷ୍ଣୁମୂର୍ତ୍ତି ଦେବ
ପ୍ରିୟ ଶିଷ୍ୟ ଯେ ସଦାଶିବ ।
ସଦୟ ହୁଅନ୍ତୁ ଦେବ ବରଜି ବିଦ୍ୱେଷ ଭାବ
ପ୍ରଣତ ତୋର ପଦଯୁଗ ॥୧୩॥

ପରସ୍ପର ବିବାଦେ ନଜାତକ୍ରୋଧୋ ରଘୂତମ ।
ଚକର୍ଷ ସହସାଭୀମଂ ଭାର୍ଗବୀୟଂ ଶରାସନମ୍ ॥୧୪॥

ରାମ-ପର୍ଶୁରାମ ବାଦ ବିଶାଦେ ରଘୁପୁଂଗବ
ପ୍ରକାଶି ନିଜ କ୍ରୋଧଭାବ ।
ପର୍ଶୁରାମଙ୍କ ଗର୍ବ ଆକର୍ଷି ଧନୁ ବୈଷ୍ଣବ
ଚୂର୍ଣ୍ଣ କଲେ ତାହାଙ୍କ ଗର୍ବ ॥୧୪।

## ଅଥଗୀତଂ ନବମମ୍ - ୯

### ବସନ୍ତ ରାଗେଣ - ରୂପକ ତାଳେନ

ଜୟ ରାମଚନ୍ଦ୍ର କମଳା ବିହାର ।
ଜୟ କୋଶଳେଶ କରୁଣାବତାର ।।୧।।

ରଘୁବଂଶ କମଳ କାନନ ଦୀନେଶ ।
କନ୍ଦର୍ପ କୋଟି କମନୀୟ ବେଶ ।।୨।।

କାଳାଗ୍ନି ସଦୃଶ କୋପାତିରେକ ।
ଗନ୍ଧର୍ବ ଗୀତ ପୂରିତ ବିବେକ ।।୩।।

ରଜନୀଚରପ୍ରକରବିପିନଦାବ ।
ବେଦାନ୍ତ ବେଦଗଣ ଭଣିତ ଭାବ ।।୪।।

ବାଗୀଶ ସର୍ବ ବିଦ୍ୟାବିଚାର
ବ୍ରହ୍ମାଦି ବନ୍ଦ୍ୟ ହୃତ ଭୂମିଭାର ।।୫।।

ମଦମୋହ କାମ ପନ୍ନଗ ଖଗେଶ ।
ଶରଦିନ୍ଦୁ ନିଭାନନ କୁଟିଳ କେଶ ।।୬।।

ତଡ଼ିଦାଭ ବସନ ରମଣୀୟ ହାସ ।
କୁନ୍ଦଭଦଶନ ମାୟା ବିଳାସ ।।୭।।

ଜୟଦେବ ବିନୟ ମତିଶୟ ମବେହି
ନିଜ ଚରଣ କମଳ ମଧୁମେଽବ ଦେହୀ ।।୮।।

ବନ୍ଦେ ଶାରଦ ପୂର୍ଣ୍ଣଚନ୍ଦ୍ର ବଦନଂ ବନ୍ଦେ କୃପାମ୍ଭୋନିଧିଂ ।
ବନ୍ଦେ ଶମ୍ଭୁପିନାକ ଖଣ୍ଡନ କରଂ ବନ୍ଦେସ୍ୱଭକ୍ତ ପ୍ରିୟମ୍ ।।
ବନ୍ଦେ ଲକ୍ଷ୍ମଣ ସଂଯୁତଂ ରଘୁବରଂ ଭୂପାଳ ଚୂଡ଼ାମଣିଂ ।
ବନ୍ଦେ ବ୍ରହ୍ମ ପରାତ୍ପରଂ ଗୁଣମୟଂ ଶ୍ରେୟସ୍କରଂ ଶାଶ୍ୱତମ୍ ।।୧୫।।

ଶରଦଚନ୍ଦ୍ର ବଦନ ବନ୍ଦେ କୃପାନିଧାନ ପୀନାକା ଧନୁ ବିନାଶାୟ ।
ବନ୍ଦେ ସ୍ୱଭକ୍ତପ୍ରିୟ ଲକ୍ଷ୍ମଣ ସଖା ସହାୟ ଭୂପାଳ ଗତିମୁକ୍ତି ଦାୟ ।
ସେ ବ୍ରହ୍ମ ପରାତ୍ପର,
ଶାଶ୍ୱତ ରୂପଚିର ସଂସାର ଶ୍ରେୟସ୍କର ନମୁ ତୋ ପାଦପଦ୍ମେ ଶିର ॥୧୫॥

ତସ୍ମିନ୍‌ଗତେ ପରଶୁରାମ ମୁନାବରଣ୍ୟ -
ମାନୀୟ ପଂକ୍ତିରଥମାତ୍ମପୁରୋହିତେନ ।
ପୂଜାଞ୍ଚକାର ମହତୀଂ ବିଧିନା ବିଧିଜ୍ଞଃ
ପପ୍ରଚ୍ଛଶାରଦଶିବଂ ଜନକାଧିରାଜଃ ॥୧୬॥

ପର୍ଶୁରାମ ତେଜହୀନ ତୁରିତ ବନଗମନ ଆଶ୍ୱସ୍ତ ଜନକ ରାଜନ ।
ସତାନନ୍ଦ ଡାକିଣ ଜନକପୁର ରାଜନ ସତ୍କାର ପୂଜାବିଧି ମାନ ।
ସେ ବିଧି ସମ୍ମତ,
ସତ୍କାର ବିଧିବିଧାନ ସ୍ନିଗଧ ମଧୁବଚନ କଲେ ସେ ରାଜ ପୁରୋହିତ ॥୧୬॥

ଇତି ଶ୍ରୀମଦ୍ରାମଗୀତଗୋବିନ୍ଦେ ମହାକାବ୍ୟେ ଶ୍ରୀଜୟଦେବ କୃତୌ
ବିଜିତ ପରଶୁରାମୋ ନାମ ଦ୍ୱିତୀୟଃ ସର୍ଗଃ ।





# ତୃତୀୟଃ ସର୍ଗଃ - ୩

ବର୍ଣ୍ଣିତ ବିଷୟ ବସ୍ତୁ -

ସତାନନ୍ଦଙ୍କ ମାର୍ଗଦର୍ଶନରେ ଶ୍ରୀରାମଙ୍କ ମଣିମଣ୍ଡପରେ ବିଜୟ ଓ ଭୃଗୁ, ସନାତନ, ପର୍ବତ, ଦେବଳ, ମରିଚ, ଲୋମଶ, ଅଗସ୍ତି, ନାରଦ, ଶୁକ ଓ ସନକାଦି ମୁନିମାନଙ୍କ ଗହଣରେ ବିବାହ ଉତ୍ସବ ଆୟୋଜନ । କୁଳାଚାର୍ଯ୍ୟ ବଶିଷ୍ଠ ଓ ସତାନନ୍ଦଙ୍କ ଦ୍ୱାରା ମାଙ୍ଗଳିକ କାର୍ଯ୍ୟ ସଂପାଦନ । ଧନଧାନ୍ୟ, ମଣିମାଣିକ୍ୟ, ସୁରଭୀ, ଚତୁରଂଗବଳ, ଦାସଦାସୀ, ପାଟବସ୍ତ୍ର, ଶିବୀକା ଆଦି ଯଥାମାନ୍ୟ ଉପଢୌକନ ପୂର୍ବକ ଜନକପୁରରୁ ବିଦାୟ । ପଥରେ ସରଜୁ କୂଳରେ ଅବସ୍ଥାନ ଓ ଅଯୋଧ୍ୟା ପ୍ରତ୍ୟାବର୍ତନ । ସୀତାଙ୍କ ସହ ଶ୍ରୀରାମ ରାଜପୁରରେ ଅବସ୍ଥାନ । କୌଣସି ଏକ ଦିନ ରାଜା ଦଶରଥ ଦର୍ପଣରେ ସ୍ୱମୁଖ ଦର୍ଶନ କାଳରେ କର୍ଣ୍ଣମୂଳରେ ପକ୍ୱକେଶ ଦେଖି, ବାର୍ଦ୍ଧକ୍ୟ ଉପଗତ ହେବା ଜାଣି ମନରେ ବୈରାଗ୍ୟ ଜାତ । କୁଳାଚାର୍ଯ୍ୟ ବଶିଷ୍ଠଙ୍କୁ ଡାକି ସର୍ବଗୁଣ ସଂପନ୍ନ ଶ୍ରୀରାମଙ୍କୁ ରାଜ୍ୟଭାର ଦେଇ ବାନପ୍ରସ୍ଥ ଯିବା ନିମନ୍ତେ ବିଚାର ବିମର୍ଶ । ଦଶରଥଙ୍କ ନିଷ୍ପତି କଥା ଜାଣି ରାଣୀ କୈକେୟୀ ପୂର୍ବ ପ୍ରତିଜ୍ଞା କଥା ସ୍ମରଣ କରାଇ ଭିନ୍ନମତ ପୋଷଣ । ରାଜା ଦଶରଥ ଶ୍ରୀରାମଙ୍କୁ ଡାକୁ ବନଗମନ ନିମନ୍ତେ ଆଦେଶ ପ୍ରଦାନ । ରାମ, ସୀତା ଓ ଲକ୍ଷଣ ଜଟାବଳ୍କଳ ବେଶ ଧାରଣ ପୂର୍ବକ ଦଶରଥଙ୍କୁ ପ୍ରଣାମ ଜଣାଇ ବନଗମନ । ଶୃଙ୍ଗବେରପୁର ଗମନ ପୂର୍ବକ ନିଷାଦରାଜାଙ୍କ ମିଳନ ଓ ପରେ ଭରଦ୍ୱାଜ ଋଷିଙ୍କ ଆଶ୍ରମକୁ ଗମନ । ନାନାମୁନିଋଷିଙ୍କ ଆଶ୍ରମ ଭ୍ରମଣ କରି ପ୍ରୟାଗରେ ଅବସ୍ଥାନ ।

ଦର୍ଶିତାଧ୍ୱା ବିନୀତେନ ସତାନନ୍ଦ ପୁରୋଧସା ।
ଯଯୌ ଜନକ ରାଜସ୍ୟ ମଣ୍ଡପଂ ମଣି ମଣ୍ଡିତମ୍ ॥୧॥

ସତାନନ୍ଦ ପୁରୋହିତ ମାର୍ଗ ଦର୍ଶନରେ ।
ରାମଚନ୍ଦ୍ର ବିଜେକଲେ ମଣି ମଣ୍ଡପରେ ।
ଜନକରାଜ ନିର୍ମିତ,
ଶୁଭ କର୍ମ ସଂପାଦନେ ହେଲେ ଯେ ପ୍ରବୃତ୍ତ ॥୧॥

ଭୃଗୁ ସନାତନ ନାରଦ ପର୍ବତାଽତ୍ରି ଶୁକସୌନକ ଦତ୍ତ ମରୀଚୟଃ ।
ପୁଲହ ଦେବଳ ଲୋମଶ କୁମ୍ଭଜାଃ ପ୍ରଣୟ ପୂର୍ବକ ମାହୁରହୋଽଖିଳାଃ ॥୨॥

ଭୃଗୁ ସନାତନ ପର୍ବତ ନାରଦ ଅତ୍ରି ଶୁକ ସନକାଦି ।
ଦତ୍ତ ମରୀଚି ଦେବଳ ଲୋମଶ ଅଗସ୍ତି ପ୍ରଭୃତି ଋଷି ଆଦି ।
ଲୋଡ଼ି ଜନକଙ୍କ ଅନୁମତି,
ରାମ-ସୀତାଙ୍କର ବିବାହ ଉତ୍ସବେ ବଳାଇଲେ ସର୍ବେମତି ॥୨॥

ସତାନନ୍ଦ ବଶିଷ୍ଠାଭ୍ୟାମାଜ୍ଞପ୍ତୋରଘୁନନ୍ଦନଃ ।
ତସ୍ମୈ ସିଂହାସନେଽଦିବ୍ୟେ ସୀତାୟାସହ ମଞ୍ଜୁଳେ ॥୩॥

ସତାନନ୍ଦ ବଶିଷ୍ଠ କୁଳପୁରୋହିତ ଶ୍ରୀରାମଙ୍କ ଆଜ୍ଞାପାଇ ।
ସୀତା ସହ ରାମ ଦିବ୍ୟ ସିଂହାସନେ ଅଳଙ୍କୃତ କଲେ ନେଇ ।
ସେ ମାଙ୍ଗଳିକ ସଂପାଦନେ,
ସୀତା ରାମଙ୍କର ଯୁଗଳ ମୂରତିଧ୍ୟେୟ ହେଉ ଏ ଜୀବନେ ॥୩॥

## ଅଥ ଗୀତଂ ଦଶମମ୍ - ୧୦

### ରାମକରୀରାଗେଣ - ରୂପକ ତାଳେନ

ତତ୍ର ସଦେବ ନିକରଃ ପୁରୋହିତ -

ଶ୍ରୀରାମ ରୂପ ମନୁପମଂ ପଶ୍ୟାମି ତାପହରମ୍ ।
ଜଳଦେନ୍ଦ୍ର ନୀଳମଣି ପ୍ରଭଂ ଶରଦିନ୍ଦୁ ଚକ୍ରଧରମ୍ ॥୧॥

କନକାସନେ ମଣିମଣ୍ଡପେ ସପରିଚ୍ଛଦେଽଧିଗତମ୍ ।
ଜନକାଽଧିରାଜସୁତା ସମେତମଶେଷଯୋଗିମତମ୍ ॥୨॥

ଚପଳା ବିଭୂଷିତ ସଜଳଜଳଧରମିବ ମନୋହରଣମ୍ ।
କିଞ୍ଜଳ୍କ ପୀତଦୁକୂଳ ସଂକୁଳମିନ୍ଦିରା ରମଣମ୍ ॥୩॥

କେୟୂର କୁଣ୍ଡଳ ମୁକୁଟ କଂକଣ ମୁଦ୍ରିକା ରୁଚିରମ୍ ।
ମୁକ୍ତାଭରଦନମନଂଗସୁନ୍ଦରମଂଗୁଳୀରୁଚିରମ୍ ॥୪॥

ବିଦ୍ୟା ବିଚାରଣ ଦକ୍ଷମଚ୍ଛମପକ୍ଷ ପକ୍ଷ କରମ୍ ।
କଲ୍ୟାଣ ଭାଜନମୀଶ ବନ୍ଦିତମୀତି ଭୀତିଶରମ୍ ॥୫॥

ଆଜାନୁବାହୁ ମୁଦାରବିକ୍ରମମର୍କକୋଟିରୁଚମ୍ ।
ନିଃଶେଷ ଲକ୍ଷଣ ଲକ୍ଷଣୀୟମପାସ୍ତରୋଗଶୁଚମ୍ ॥୬॥

ମନ୍ଦାର ମଲ୍ଲୀକୁନ୍ଦ ତୁଳସୀଦାମ ସଂବଳିତମ୍ ।
ଶ୍ରୀବତ୍ସ ଚିହ୍ନିତ ବକ୍ଷସଂ ସ୍ୱର୍ଣ୍ଣୋପବୀତଚିତ୍ରମ୍ ॥୭॥

ଶ୍ରୀ ଜୟଦେବ ଭାଷିତ ମଷ୍ଟପଦମହୋନିରାଶ ପରମ୍ ।
ଶ୍ରେୟୋ ଦିଶତ୍ୱଖିଳଂ ଜନାୟ ନିଜାୟ ଲୋକ ବରମ୍ ॥୮॥

ଜନକଃ ବଶିଷ୍ଟଂ ପ୍ରତି-

କୁଳପତି ର୍ଜଗତାମୁପକାରକଃ ଶ୍ରୁତିବିଦାଂପ୍ରଥମୋ ମୁନିପୁଙ୍ଗବଃ ।
ବିଧିସୁତସ୍ତ୍ୱମସି ପ୍ରିୟକାଂକ୍ଷୟା କଥୟ ଯଦ୍ ପ୍ରକରୋମି ତଦେବହି ॥୪॥

ଜନକ ରାଜର୍ଷି ବଶିଷ୍ଠେ ଆଶ୍ୱାସି ବିହିଲେ କୁଳ ବିଧାନ ।
ବିଧି ବିରଚିତ କର୍ମ ସଂପାଦନେ ତୁମ୍ଭେ ଅଗ୍ରଜ ବିଦ୍ୱାନ ।
ମୁନିଶ୍ରେଷ୍ଠ ଅଗ୍ରଗଣ୍ୟ,
ତୁମ୍ଭରି ଆଦେଶ ପାଳିବି ହେ ଦେବ ତୁମ୍ଭେ ତ ବିଧି ନନ୍ଦନ ॥୪॥

ବଶିଷ୍ଠଃ -

ରାଜର୍ଷେ ସର୍ବ ତତ୍ତ୍ୱଜ୍ଞ କିଂ ନିୟୋଜ୍ୟଂମୟା ତ୍ୱୟି ।
ପ୍ରକ୍ଷାଳୟ ପଦାମ୍ଭୋଜଂ ରାମସ୍ୟ ପରମାତ୍ମନଃ ॥୫॥

ହେ ରାଜର୍ଷେ ତୁମ୍ଭେ ଅଟ ସର୍ବ ଗୁଣାଧାର
ମୁଁ ଛାର କହିବି କିସ ତୁମ୍ଭ ଅଗୋଚର,
ବିଧି ପାଦପ୍ରକ୍ଷାଳନ,
ପରମାତ୍ମା ଶ୍ରୀରାମଙ୍କ ଉଚିତ ବିଧାନ ॥୫॥

ଅଥ ଗୀତଂ ଏକାଦଶମ୍ - ୧୧
ଦେଶିବରାଡ଼ିରାଗେଣ - ଅଷ୍ଟତାଳି ତାଳେନ

ସଖେ ସାନୁରାଗଂ ଭଜତୁ ରଘୁବୀର ପଦ ମେକମ୍ ।
ସର୍ବ ସୌଭାଗ୍ୟ ସଂପତ୍ତି ସନ୍ଦୋହକରମିନ୍ଦୁଶତକୋଟିରୁଚିସେକମ୍ ॥୧॥

କେତୁ ଦମ୍ଭୋଳି ରେଖାଙ୍କୁଶ ଛତ୍ରବର ଚିହ୍ନମମ୍ଭୋଜ ହାରମ୍ ।
ବ୍ରହ୍ମ ବାଗୀଶ ସନକାଦି ମୁନି ସେବିତଂ ବେଦ ବେଦାନ୍ତ ମତସାରମ୍ ॥୨॥

ନମ୍ର ଦିକ୍‌ପାଳଗଣ ମୌଳି ମଣିମାଳିକାକାନ୍ତି ବିସ୍ମରଣମତିଶୋଭମ୍ ।
ସିଦ୍ଧ ବିଘ୍ନେଶ ଯକ୍ଷେଶକୀନାଶ ବସୁ ତୁଷିତ ଗନ୍ଧର୍ବ କୃତ ଲୋଭମ୍ ॥୩॥

ପୂରିତାନନ୍ଦକାମାରି ଶିରସି ସ୍ଫୁରଦ୍ୱିମଳଗଂଗୌଘ ଜଳସିକ୍ତମ୍ ।
ଶାପବଶଗୌତମୀପାପପରିଣାମହରମରୁଣମୁଦ୍ୟୋତଦ୍ୟୁତିରକ୍ତମ୍ ॥୪॥

ଅଞ୍ଜନୀ ନନ୍ଦନ ପ୍ରେମକାସାର ସରସୀରୁହଂ ଯୋଗିଗଣ ଯତ୍ନମ୍ ।
ଇନ୍ଦିରାପାଣିପାଥୋଜବର ଲାଳିତଂ ସଦ୍‌ବୃତ୍ତ ପାବନଂ ନିପୁଣ ରତ୍ନମ୍ ॥୫॥

ବିପୁଳ ବିସ୍ତାର ସଂସାରସାଗର ତରଣ ଶରଣ ଶୁଭକନ୍ଦ ଦୃଢ଼ ନାବମ୍ ।
କାମ ମଦମୋହ ଲୋଭାଦି କାନନ ମହାବିଧ ବିଷମ ତମ ଦାବମ୍ ॥୬॥

ଦର୍ଶନା ଦେବ ଲୋକାର୍ତ୍ତି ଶୋକାପହଂ ରାକ୍ଷସାଭିଭବ ମଭିରାମମ୍ ।
କାମତରୁ କାମମଣିକାମଧୁ କ୍ କୋଟିଗୁଣ ଦାନକର ପରମ ବିଶ୍ରାମମ୍ ॥୭॥

ଜୟତି ଗମ୍ଭୀର ଜୟଦେବ କବିଭାରତୀ ପୁଣ୍ୟଦା ଶମିତ ପରିତାପା ।
ରାଜରାଜେନ୍ଦ୍ର ରଘୁବର ଚରଣାମ୍ବୁଜ ସ୍ମରଣ ଶୁଭକରଣ ଗତପାପା ॥୮॥

x x x

ଶ୍ରୁତ୍ୱା ମହର୍ଷେର୍ବଚନଂ ମନୋହରଂ ପ୍ରକ୍ଷାଲ୍ୟ ପାଦୌ ବିଧିନା ମହୀପତିଃ ।
ଚକାର ବୈବାହିକକର୍ମ ଶୋଭନଂ ଶ୍ରିୟୋନୁରୂପଂ ସ୍ୱକୁଳୋଚିତଂ ମୁଦା ॥୬॥

ମହର୍ଷି ବଚନ ଶୁଣି ମନୋରମ ପାଦପ୍ରକ୍ଷାଳନେ ଦେଲେ ମତି ।
ବୈବାହିକ କର୍ମ କଲେ ସଂପାଦନ କୁଳୋଚିତ ଧର୍ମ ରୀତିନୀତି ।
ସେ ବିଦେହ ନୃପତି,
ରାମ ସୀତାଙ୍କର ଯୁଗଳ ମୂରତି ସ୍ମରୁ ସଦା ମୋର ମତି ॥୬॥

ଲବ୍ଧ୍ୱା ଧନାନି ସୁରଭୀ ମହିଷୀ ସ୍ତୁରଂଗା
ଦନ୍ତାବଳାଂଶ୍ଚ ଶିବିକା ବସନାନି ଭୂୟଃ ।
ଦାସୀଶ୍ଚ ଦାସ ନିବହାନ୍ବନୁବଂଶବୀରା
ଯାତା ନରେନ୍ଦ୍ର ତନୟାଃ ପୁରମାତ୍ତଦାରାଃ ॥୭॥

ଧନଧାନ୍ୟ ମଣିମାଣିକ୍ୟ ସୁରଭି ଗଜବାଜି ଚତୁରଂଗ ବଳ ।
ଶିବିକା ଆବର ପାଟବସ୍ତ୍ର ଆଦି ଦାସଦାସୀ ଭୃତ୍ୟ ରକ୍ଷାକୁଳ ।
ସେ ବିଦାୟର ବେଳ,
ରାଜର୍ଷି ଜନକ ଦେଲେ ଅପ୍ରମିତ ସନ୍ତୋଷ ବିଧାନ ସୂର୍ଯ୍ୟକୁଳ ॥୭॥

ସ୍ଫାଟିକଂ ବିବିଧ ତୋରଣସ୍ରଜଂ ଜାତରୂପକଳଶଂ ନଭୋଲିହମ୍ ।
ସୌଧ ମୁନ୍ନତପତାକ ମାଦରାଦାବିବେଶ ରଘୁବଂଶ ବର୍ଦ୍ଧନଃ ॥୮॥

ମଣିମୟ ସ୍ଫଟିକ କୁମ୍ଭ ତୋରଣ ସଜ୍ଜିତ ଦିବ୍ୟପୁଷ୍ପମାଲ୍ୟ ମଣ୍ଡନ ।
ମାଳମାଳ ପତାକା ହର୍ମ୍ୟ ସୁଶୋଭନ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଅନୁପମ ।
ସେ ବିଜେ ରଘୁରାମ,
ଇନ୍ଦ୍ରନୀଳକାନ୍ତି ଆଭା ତନୁ ରୂପ କିଶୋଭା ଏ ଭବେ ଅଛିକି ଉପମା ॥୮॥

## ଅଥଗୀତଂ ଦ୍ୱାଦଶମ୍ - ୧୨
### ଗୁଜରୀ ରାଗେଣ - ରୂପକ ତାଳେନ

ବିହରତି ହରିରିହ ସରଯୂ କୂଳେ ।
ପଦ୍ମରାଗ ଚାମୀକର ମରକତ ବଦ୍ଧ ବିବିଧ ତରୁ କୂଳେ ॥୧॥

ସାଦର ମଜ୍ଜ ଦମିତ ଯୁବତୀ କୁଚକୁଂକୁମ ପିଙ୍ଗଳନୀରେ ।
ଶମ ଦମାଦି ସାଧନ ବିବେକବଶ ମୁନିଜନ ଶଂକୁଳ ତୀରେ ॥୨॥

ବିଲିଖିତ ମକର ନିଶାକରଦିନକର ଚଞ୍ଚଳ ବିଶଦ ପତାକେ ।
ଦିବ୍ୟାସନ ବିଶେଷ ପୂରିତଦୂରୀକୃତଦୂରିତ ବିପାକେ ॥୩॥

ସାରସ ଜଳ କୋୟଷ୍ଟିମରାଳକ ଚକ୍ର ବିଜୃମ୍ଭିତ ନାଦେ ।
ପଂକରୁହ କେଦାର, ବିବୋଧନ ପରିମଳ ଶମିତ ବିଷାଦେ ॥୪॥

ଯାତାୟାତ ତୁଂରଗ ମତଂଗଜ କରଭ ମନୁଜ ରଥ ଯାନେ ।
ଦିଶି ଦିଶି ନିଜ ବିଶ୍ରାମକାମ ବହୁ ବିରଚିତ ରୁଚିର ବିତାନେ ॥୫॥

ରାଜ ଦନେକ ଲବଙ୍ଗଲତାଲବଲିମୁନିପାଦପଚୂତେ ।
ଭ୍ରାଜିତ ତୁରଗ ତରଂଗ ବିକାଶ ଲସତ୍ ତୁଳସୀ ଦଳ ପୂତେ ॥୬॥

ଦେବ ଗୃହୈରଭିତଃ ସ୍ଫୁରତି ପ୍ରଣବାଦିକ ମନ୍ତ୍ର ବିଚାରେ ।
ଧ୍ୟାନ ପରାୟଣ ସିଦ୍ଧସମୂହ ନିରାକୃତ ବିଷୟ ବିକାରେ ॥୭॥

ଶ୍ରୀ ଜୟଦେବ କବେ ରୁଦିତଂସରଯୂ ସରିଦୁଜ୍ଜ୍ୱଳ ଗାନମ୍ ।
ସର୍ବସତା ମନିଶଂ ଭବତୁ ପ୍ରିୟଦଂସୁଖମୋଦ ନିଦାନମ୍ ॥୮॥

ଆଖେଟୈ ରିପୁମୋକ୍ଷଣୈରବିରତଂ ବିଦ୍ୟାଂବିଚାରୋତ୍ସବୈଃ ।
ଶୀଳୈ ର୍ଯଜ୍ଞଜପୈ ମନୋରମରୁଚା କୀର୍ତ୍ତ୍ୟା ଚ ସୁଶ୍ରୂଷୟା ॥
ଚିତ୍ରୈ ର୍ବାଦ୍ୟକଳାଭି ରଶ୍ୱଶିବିକା ହସ୍ତ୍ୟାବରୋହୈର୍ବଲୈଃ ।
ରାମଃ ସତ୍ୟପରାକ୍ରମୈରନୁଦିନଂ ପ୍ରୀତ୍ୟା ସିଷେବେ ନୃପମ୍ ॥୯॥

ମୃଗୟାରେ ପ୍ରବୀଣ ଶତ୍ରୁ ଦଳେନ ଯମ ବିଦ୍ୱାନ ଯଜ୍ଞାଦି ନିପୁଣ ।
ଅକ୍ଷୟ କୀର୍ତ୍ତିଯଶା ବିନୟୀ ସେବାଶୁଶ୍ରୂଷା ସତ୍ୟନିଷ୍ଠ ବାଦ୍ୟନିପୁଣ ।
ସେ ଅଭିରାମ,
ଅଶ୍ୱ ହସ୍ତୀଚାଳନ ଦଶରଥ ନନ୍ଦନ ପୂର୍ଣ୍ଣ ଆନନ୍ଦ ବିବର୍ଦ୍ଧନ ॥୯॥

**ଏକସ୍ମିନ୍ ସମୟେ ରାଜା ଗୃହୀତ୍ୱା ଦର୍ପଣଂ କରେ ।**
**ପଶ୍ୟନ୍ନିଜାନନଂ ଶୌକ୍ଲ୍ୟଂ କର୍ଣ୍ଣମୂଳେ ଦଦର୍ଶ ହ ॥୧୦॥**

କୌଣସି ଏକ ଦିନ ରାଜା ଧରି ଦର୍ପଣ ସ୍ୱମୁଖ କଲେ ଅନୁକ୍ଷଣ ।
ଦେଖନ୍ତେ ପକ୍ୱକେଶ କର୍ଣ୍ଣମୂଳରେ ଦୃଶ୍ୟ ବିସ୍ମୟେ ରହିଲେ ବିଷର୍ଣ୍ଣ ।
ସେ ବାର୍ଦ୍ଧକ୍ୟ ଆସନ୍ନ,
ବିଶାଦେ ମନ ଆଚ୍ଛନ୍ନ ବାର୍ଦ୍ଧକ୍ୟ ଆଗମନ ବୈରାଗ୍ୟ ହେଲା ଉତ୍ପନ୍ନ ॥୧୦॥

**ପ୍ରତ୍ୟୁବାଚ କୁଳାଚାର୍ଯ୍ୟଂ ବଶିଷ୍ଠଂ ମୁନିପୁଂଗବମ୍ ।**
**ରାଘବାୟ ପୁରୋରାଜ୍ୟଂ ଦେହି ମହ୍ୟଂ ତପୋବନମ୍ ॥୧୧॥**

ଡକାଇ କୁଳ ଆଚାର୍ଯ୍ୟ ବଶିଷ୍ଠ ମୁନିପୁଂଗବ ପ୍ରକାଶ ବଇରାଗ୍ୟ ଭାବ ।
ରାଘବେ ରାଜ୍ୟ ସମର୍ପି ଚଳିବି ବନ ସଂପ୍ରତି ବିହିତ କର୍ମ ଆହେ ଦେବ ।
ସେ ତପୋବନ,
ହକାରୀ ମନ୍ତ୍ରୀ ପୁଙ୍ଗବ ବ୍ୟବସ୍ଥା କରହେ ଦେବ ହେଜ ଆହେ ମହାନୁଭବ ॥୧୧॥

## ଅଥଗୀତଂ ତ୍ରୟୋଦଶମ୍ - ୧୩

### ଗୁର୍ଜରୀ ରାଗ - ଯତି ତାଳେନ

**ଶ୍ରୁତ୍ୱା କୈକେୟୀ -**

ଶୃଣୁ ମମବଚନମିଦଂ ନୃପଭୂଷଣ ॥
ସତ୍ୟସିନ୍ଧୁ ବିଦ୍ୟାହତ ଦୂଷଣ ।
ଦେହି ବରଂନାଥ ଜହି ନ ଧର୍ମପଥମ୍ ॥୧॥

ଦେବାସୁର ରଣମଧ୍ୟ ସଲୀଳମ୍ ।
ଭଂଗ ମଖ ମଦୁତ୍ତମ ରଥ କୀଳମ୍ ॥୨॥

ନିଜ କରମର୍ପ୍ୟ ତତ୍ର ଧୃତ ଶାୟକ ।
ଦତ୍ତ ବିଜୟଯଶ ସ୍ୱୟି ନାୟକ ।।୩।।

ସମୟମବାପ୍ୟ ଦଦତି ବିଜ୍ଞାନୀ ।
ତସ୍ମାଦିହି ନ ନିନିନ୍ଦିତବାଣୀ ।।୪।।

କୁରୁ ଭରତଂ କୋଶଳପୁର ନାଥମ୍ ।
ରଘୁପତି ରେତୁ ବିପିନ ମୁନି ଗାଥମ୍ ।।୫।।

ନତୁ ତବ ଧର୍ମହାନି ନ ହି ପାପମ୍ ।
ତାମୁପନୟତି ସହିତ ମହିତାପମ୍ ।।୬।।

ଆକଳୟ୍ୟ ଭୂପତି ରିପୁ କଳ୍ପମ୍ ।
ମମସି ଚକାର ଜୀବ ସଂକଳ୍ପମ୍ ।।୭।।

ଶ୍ରୀ ଜୟଦେବକ ରଚିତ ରହସ୍ୟମ୍ ।
ସାଧୁ ଜନସ୍ୟ ତନୋତୁ ଯଶସ୍ୟମ୍ ।।୮।।

ଶ୍ରୁତ୍ୱା ନୃପୋ ଦଶରଥୋ ବଚନଂ ମହିଷ୍ୟା
ଭିନ୍ନୋବଭୂବହୃଦୟେ କରୁଣାବତାରଃ ।
ରାମଂ ମହେନ୍ଦ୍ର ମଣିସୁନ୍ଦର ଦେହ କାନ୍ତିଃ
ମାହୂୟକାନନ ଗମାୟ ସମାଦିଦେଶ ।।୧୨।।

କୈକେୟୀ ରୁକ୍ଷ ବଚନ ଶୁଣି ଦଶରଥ ରାଜନ ହୃଦୟ କଲା ବିଦାରଣ ।
ନୀଳମାଣିକ୍ୟ ଦୃଶା ରାମଦେହକାନ୍ତି ଯଶା ଡକାଇ ନିଜ ସନ୍ନିଧାନ ।
ସେ ବନଗମନ,
ହୃଦୟ ବିଦାରଣ ସତ୍ୟରକ୍ଷା ବିଚାରିଣ ନିଶେଷେ ସ୍ଥିର ହୃଦ ମନ ।।୧୨।।

ବୈଦେହୀ ସହ ଜାନୁଜୋ ରଘୁବରୋ ଧୃତ୍ୱା ଜଟା ବଲ୍କଳଂ ।
ନତ୍ୱା ଭୂପତିମାଦରାଦନୁୟଯୌ ତଚ୍ଛୃଙ୍ଗବେରଂ ପୁରମ୍ ।।
ନାନାପୁଷ୍ପ ଫଳୈ ର୍ନିଷାଦ ପତିନା ସମ୍ମାନିତ ଷ୍ଛିନ୍ନୟୋ ।
ଭାରଦ୍ୱାଜ ମବେକ୍ଷ୍ୟ ରମ୍ୟ ବିଧିନାଽପଶ୍ୟତ୍ ପ୍ରୟାଗଂ ପୁନଃ ।।୧୩।।

ବୈଦେହୀ ସହ ଲକ୍ଷ୍ମଣ ରାମ ବନଗମନ ଜଟା ବଲ୍କଳ ପରିଧାନ ।
ରାଜାପଦେ ଶିରମଣ୍ଡନ ଶୃଙ୍ଗବେର ପୁର ଗମନ ନିଷାଦ ପତିର ମିଳନ ।
ସେ ଫଳମୂଳ ଭକ୍ଷ ଆଣିଣ,
ଭରଦ୍ୱାଜ ଆଶ୍ରମ ପୁନଃ ପ୍ରୟାଗ ଗମନ ବନବାସଜୀବନ କ୍ରମ ॥୧୩॥

## ଅଥ ଗୀତଂ ଚତୁର୍ଦ୍ଦଶମ୍ - ୧୪

### ଗୁର୍ଜରୀରାଗେଣ - ପ୍ରତିମଣ୍ଠ ତାଳେନ

ଲକ୍ଷ୍ମଣୋ ରାମଂ ପ୍ରତି -

ପଶ୍ୟ ପଶ୍ୟ ରଘୁବୀର ପ୍ରୟାଗମ୍ ।
ମଜ୍ଜଦଖିଳ ମୁନିଗଣ ମତି ରାଗମ୍
ସୀତୟାସହ ସନ୍ତତ ମେତମ୍ ॥୧॥ ଧ୍ରୁବପଦମ୍ ।

ନୀଳ ପୀତସିତ ଚିତ୍ର ପତାକମ୍ ।
ସୁଖ ସମୁହ ଶୀଥୀଳୀକୃତ ନାକମ୍ ॥୨॥

ସିଂହାସନ ପରିପୂରିତ କୂଳମ୍ ।
ଜ୍ଞାନଯୋଗ ଜପ ସାଧନ ମୂଳମ୍ ॥୩॥

ବାଣୀ ଜହ୍ନୁ ତରଣିଜା ସଂଗମ୍ ।
ନିମିଷାଦେତି କଲୁଷ ମତି ଭଂଗମ୍ ॥୪॥

ଉପବନ ବନ ଭୂଷିତ ମହିଦେଶମ୍ ।
ସକଳ କଳାକଳ୍ପିତ ଶୁଭ ବେଶମ୍ ॥୫॥

ମନୁଜାକାର ସୁରାସୁର ନାଗମ୍ ।
ବିହିତ ନୃପତି ତାପସବର ଯାଗମ୍ ॥୬॥

ମୁକ୍ତି ଚତୁର୍ବିଧ ସୁଲଭ ମନୁପମ୍ ।
ରାଜମାନ ନାନା ମଣି ଯୂପମ୍ ॥୭॥

ଶ୍ରୀ ଜୟଦେବ ଭଣିତ ମିତି ଗୀତମ୍ ।
ସୁଖୟତୁ ରାମଚରଣମୁପନୀତମ୍ ॥୮॥

ପାଣୌ ବାଣ ସରାସନୌ କଟିତଟେ ତୂଣୀର ଚର୍ମାମ୍ବରୌ ।
ପୂର୍ଣ୍ଣେନ୍ଦୁ ପ୍ରତିମାନନୌ ଚ ଶିରସି ସ୍ଫୂର୍ଜ୍ଜଟା ମଣ୍ଡଳୌ ।
ଇନ୍ଦ୍ୱର୍କାଯୁତତେଜସୌ ଜଳଧର ଶ୍ୟାମୌ ସତାଂ ବଲ୍ଲଭୌ
ପୃଚ୍ଛନ୍ତୌ ସୁଖବାସିନିର୍ଜନପଥଂ ପ୍ରୀତ୍ୟା ମନୋହାରିଣୌ ॥୧୪॥

ହସ୍ତେ ଧନୁର୍ବାଣ କଟୀତଟେ ତୂଣ ପୂର୍ଣ୍ଣଚନ୍ଦ୍ର ନିଭାନନ ।
ଶିରେ ଜଟାଜୂଟ ଚକ୍ରକାନ୍ତି ମୁଖ ତନୁନୀଳଶ୍ୟାମଘନ ।
ସେ ସାଧୁ ମୁନିଜନ,
ଜନପଥେ ଭ୍ରମି ଋଷିମୁନି ଚାହିଁ ଅନ୍ୱେଷିଲେ ଦୁଃଖ ସୁଖ ଜାଣ ॥୧୪॥

ଇତି ଶ୍ରୀମଦ୍ରାମ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବ କୃତୌ
ଜଗନ୍ନିବାସେ ନାମ ତୃତୀୟଃ ସର୍ଗଃ ॥





# ଚତୁର୍ଥ ସର୍ଗଃ - ୪

ବର୍ଣ୍ଣିତ ବିଷୟ ବସ୍ତୁ –

ନାନା ମୁନି ଆଶ୍ରମ ପରିକ୍ରମା ପୂର୍ବକ ଚିତ୍ରକୂଟରେ ଅବସ୍ଥାନ । ଏକାନ୍ତରେ ରାମ, ସୀତାଙ୍କୁ ଦେଖି ଇନ୍ଦ୍ରପୁତ୍ର ଚିତ୍ରସେନ କାକ ଶରୀର ଧାରଣ ପୂର୍ବକ ନିହିତ ସୀତାଙ୍କ ପଦଅଙ୍ଗୁଷ୍ଠିକୁ ଖୁମ୍ପିବା ଦେଖି ଶ୍ରୀରାମଙ୍କ କ୍ରୋଧ ଓ ଇଶିକା ଶର ସନ୍ଧାନ ଓ ଦୁଷ୍ଟଦମନ, ଦଣ୍ଡକାରଣ୍ୟ ଗମନ । ଅଗସ୍ତି ଋଷିଙ୍କ ନିର୍ଦ୍ଦେଶରେ ଶରଭଂଗ ଓ ସୁତୀକ୍ଷ୍ଣ ଋଷିଙ୍କ ଆଗମନ ଓ ଦଣ୍ଡକ ବନରେ ଅବସ୍ଥାନ । ସୂର୍ପଣଖା, ଖରଦୂଷଣ ପ୍ରଭୃତି ରାକ୍ଷସଙ୍କ ଆଗମନ । ମାରୀଚ ନିଧନ ଓ ସୀତା ହରଣ । ଜଟାୟୁ ସହ ସଂଗତିଦାନ । କବନ୍ଧ ରାକ୍ଷସ ନିଧନ ଓ ଶବରୀର ଆତିଥ୍ୟ ଗ୍ରହଣ । ପଂପାସରୋବର ନିଟକରେ ହନୁମାନ ସହ ସାକ୍ଷାତ, ଋଷିମୁକ ପର୍ବତରେ ହନୁମାନ ସହ ରାମ, ଲକ୍ଷଣଙ୍କ ସୁଗ୍ରୀବ ସହ ମିତ୍ରତା ବନ୍ଧନ । ସପ୍ତତାଳ ଭେଦ ଓ ବାଳୀ ବଧ । ସୁଗ୍ରୀବ ଅଭିଷେକ । ସୁଗ୍ରୀବ ନିର୍ଦ୍ଦେଶରେ ବାନର ଓ ଭଲ୍ଲୁକ ସେନାଙ୍କ ସୀତାଙ୍କୁ ଅନ୍ୱେଷଣ । ଜାମ୍ବବାନ ନିର୍ଦ୍ଦେଶରେ ହନୁମାନ କ୍ଷାର ସମୁଦ୍ର ଲଂଘନ କରି ଲଙ୍କାରେ ଅଶୋକ ବନରେ ଅସୁରୀ ପରିବେଷ୍ଟିତ ସୀତାଙ୍କ ସଂନ୍ଧାନ, ସାକ୍ଷାତ ଓ ଶ୍ରୀରାମଙ୍କ ମୁଦ୍ରିକା ପ୍ରଦାନ । ଲଙ୍କା ଦହନ ଓ ଅସୁର ନିଧନ ପୂର୍ବକ ପ୍ରତ୍ୟାବର୍ତନ ।

ନାନା ମୁନ୍ୟାଶ୍ରମଂ ମାର୍ଗେ ପୂତଂ କୃତ୍ୱା ପଦକ୍ରମୈଃ ।
ଦଦର୍ଶ ଚିତ୍ରକୂଟାଦ୍ରିଂ ଚିତ୍ରକୂଟାଭିମଣ୍ଡିତମ୍ ॥୧॥

ନାନା ମୁନି ଆଶ୍ରମ ମାର୍ଗେ କରି ଦର୍ଶନ ଚିତ୍ରକୂଟ କଲେ ଗମନ ।
ପ୍ରକୃତି ଚିତ୍ରେ ଚିତ୍ରିତ ନାମ ଯା ଚିତ୍ରକୂଟ କଲେ ସେ ଶୋଭା ବିବର୍ଦ୍ଧନ ।
ସେ ଚିତ୍ରକୂଟ,
ମୁନି ଆଶ୍ରମ ପୂତ ଶୋଭାରାଜି ମଣ୍ଡିତ ସେ ବନେ ରାମ ଉପଗତ ॥୧॥

## ଅଥ ଗୀତଂ ପଞ୍ଚଦଶମ୍ - ୧୫

### ଶାବରୀ ରାଗେଣ - ରୂପକ ତାଳେନ

ଚିତ୍ରକୂଟମବଲୋକୟ ସୀତେ ।
ଉନ୍ନତ ଶିଖର ଲିଖିତ ଘନମଣ୍ଡଳ ମଙ୍ଗଳ କରଣ ବିନୀତେ ॥୧॥

ମନ୍ଦାକିନୀ ପ୍ରବାହ ବିଲଂଘନ ଚଞ୍ଚଳ ପକ୍ଷ ମରାଳମ୍ ।
ବିକଶିତ କୁନ୍ଦ ଲବଙ୍ଗଲତା ଲବଲୀ ସରସୀରୁହ ମାଳମ୍ ॥୨॥

ଚମ୍ପକ ଭୂର୍ଜ କଦମ୍ବ ତମାଳ ମୁନିଦ୍ରୁମ ଭୂଷିତ ଭାଗମ୍ ।
ବୈର ବିହୀନ ମତଂଗଜସିଂହ ମୟୂର ମହାବିଷ ନାଗମ୍ ॥୩॥

ସ୍ଫାଟିକ ପଦ୍ମରାଗେନ୍ଦ୍ରନୀଳମଣି ହୀରକ ଗୈରିକ ଶୋଭମ୍ ।
ଶୀତଳ ଧୀର ସୁଗନ୍ଧ ସମୀରଣମୃଷିଜନ ମାନସ ଲୋଭମ୍ ॥୪॥

ଗବୟ ଶରଭ ହରିଣୀହରିଣାଦନ କପିକୁଳ ବିପୁଳ ବିହାରମ୍ ।
ଇନ୍ଧନଦଳ ଫଳ କୁସୁମ ଦର୍ଭଜଳ ହେତୁକ ମୁନି ସଞ୍ଚାରମ୍ ॥୫॥

ଶୁକ ହାରୀତଚକୋର ଶାରିକା ଖଞ୍ଜନ କୋକ ବିରାବମ୍ ।
ନିର୍ଝର ଝରଣ ସଲୀଳ ଶିକରଭର ବିଗତ ବିଷମତରୁ ଦାବମ୍ ॥୬॥

ଗୁହା ନିବାସ କିରାତ ହୁଣ ଖସ ବିରଚିତ ବିଟପ ବିତାନମ୍ ।
ବନଦେବୀ ସସତାଳ ସୁସ୍ୱର ରସଶ୍ରୁତ କୃତମଙ୍ଗଳ ଗାନମ୍ ॥୭॥

ଶ୍ରୀ ଜୟଦେବ ମହାକବି ନିର୍ମିତ ମଦ୍ଭୁତ ଭୂଧର ଗୀତମ୍ ।
ହରତୁ ମଳଂ ସକଳଂ ପଠତାମନିଶଂ ପ୍ରକରୋତୁ ବିନୀତମ୍ ॥୮॥

ଏକଦା ରଘୁପତି ର୍ମହାଗୀରୌ ସୀତୟାସହ ଶିଳାତଳେଽମଳେ ।
ନିଦ୍ରିତୋଽଭବଦୁଦାରବିକ୍ରମଃ ଶକ୍ରସୂନୁରଗମତ୍ ଖଗାକୃତିଃ ॥୨॥

ଏକଦା ରଘୁପତି ସୀତୟାସହ ବସତି ମହାଗୀରିଶିଖର ତଳେ ।
ନିଦ୍ରିତ ଯିବାକାଳେ ଚିତ୍ରସେନ ମାୟାରେ କାକଶରୀର ଧରି ହେଲେ ।
ସେ ଇନ୍ଦ୍ରସୁତ,
ମାୟା ଶରୀର ରୂପ ପ୍ରଭୁ କଥା ଅଜ୍ଞାତ ସେ ମୂଢ଼ କାହୁଁ ହେବ ପ୍ରାପ୍ତ ॥୨॥

ବିଦଦାର ପଦାଙ୍ଗୁଷ୍ଠ ମୈନ୍ଦ୍ରିଃ କାକ ପରୀକ୍ଷୟା ।
ଈଷିକାସ୍ତ୍ରେଣ ରାମୋଽକ୍ଷି କାଣଂଚକ୍ରେ ଦୁରାତ୍ମନଃ ।।୩।।

ସୀତାଙ୍କ ପଦ ଅଙ୍ଗୁଷ୍ଠି କାକ ଖୁମ୍ପିବା ଦେଖି ବିଷଣ୍ଣ ହେଲେ ସୀତାପତି ।
ଈଷିକା ଶର ନିକ୍ଷେପି ବାଣ ବିନ୍ଧି ତା ଆଖି ଦୁଷ୍ଟ ଦମନୀତି ସଂପାତି ।
ସେ ରଘୁପତି,
ଦୟାବତାର ରାମ ଭ୍ରମି ମୁନି ଆଶ୍ରମ ଚିତ୍ରକୂଟେ ସ୍ଥାପି ବସତି ।।୩।।

ଶରଭଙ୍ଗ ସୁତୀକ୍ଷ୍ଣ ଯୋଗିନୌ କୃପୟା ବୀକ୍ଷ୍ୟ ରଘୂତ୍ତମଃ ପୁନଃ ।
ଘଟଯୋନି ମୁନେରନୁଜ୍ଞୟା କୃତବାନ୍ ଦଣ୍ଡକ କାନନେ ସ୍ଥିତିମ୍ ।।୪।।

କୁମ୍ଭ ଋଷିଙ୍କ ପୁତ୍ର ଅଗସ୍ତି ନିର୍ଦ୍ଦେଶିତ ଶରଭଙ୍ଗ ସୁତୀକ୍ଷ୍ଣ ଆଗମନ ।
ଦେଖି ଦଣ୍ଡକାରଣ୍ୟ ପବିତ୍ର ପୁଣ୍ୟ ଆଶ୍ରମ ନିବାସ କଲେ ସେହି ବନ ।
ସେ ଯୋଗିଜନ,
ଶ୍ରୀରାମ ରଘୂତ୍ତମ କୃପାପାତ୍ର ଅନ୍ୱେଷଣ ବିହାର ମୁନିସନ୍ନିଧାନ ।।୪।।

## ଅଥ ଗୀତଂ ଷୋଡ଼ଶମ୍ - ୧୬

ଶାବରୀ ରାଗେଣ - ରୂପକ ତାଳେନ ଗୀୟତେ

ଦଣ୍ଡକ ବନ ମତି ଚାରୁ ଚକାଶେ,
ଶାରଦେନ୍ଦୁ ନିର୍ମଳ ରୁଚି ରଘୁପତି ଯଶସି ଜଗତି ସବିକାଶେ ।।୧।।

ନିର୍ଭୟ କୁମ୍ଭଜାଦି ନାନାମୁନିଜନ କୃତ ସାଧନ ଯାଗମ୍ ।
ବିଗତ ବୈର ମୃଗଦସ୍ୟୁ ଖଗାଦି ବଳାହକଦାବ ବିୟୋଗମ୍ ।।୨।।

ଗୋଦା ତରଳ ତରଂଗ ବିଚିତ୍ରିତ ରୁଚିର କୂଳକୃତ ଶାଳମ୍ ।
ବିହିତ ନିବାସ ବିଦେହ ସୁତା ରଘୁନାଥ ସୁମିତ୍ରା ବାଳମ୍ ।।୩।।

ଖଣ୍ଡିତ କାମ ସମାକୁଳ ଶୂର୍ପଣଖା ଶ୍ରୁତିକରଣ ବିନାଶମ୍ ।
ଖରଦୂଷଣ ରଜନୀଚର ସହିତ ସହସ୍ର ଚତୁର୍ଦ୍ଦଶ ନାଶମ୍ ।।୪।।

ରାବଣ ଶାସନ କନକ ହରୀଣ ମାରୀଚ ନିପାତ ନିଧାନମ୍ ।
ସୀତାହରଣ ବିଳାପନ ଗୃଧ୍ର ବିଲୋକନ ସଂଗତି ଦାନମ୍ ।।୫।।

ଯୋଜନବାହୁ କବନ୍ଧ ମହାସୁର ମାରଣ ପାବକ ସଂଗମ୍ ।
ନବଧା ଭକ୍ତି ବିବେକ ବିଚାରଣ ଶବରୀ ସଂସ୍କୃତିଭଙ୍ଗମ୍ ॥୬॥

ନାରଦମୁନି ଦର୍ଶନବିଧି ସନ୍ତତ ରୁଚିର କଳଧ୍ୱନି ଗୀତମ୍ ।
ପଂପା ନିକଟ ସମୀର ତନୟ ସଂବାଦ ବିଶେଷ ମଭୀତମ୍ ॥୭॥

ଶ୍ରୀ ଜୟଦେବ କବେ ରୁଦିତଂ ଦଣ୍ଡକ ବନ ଚରିତମନୁପମମ୍ ।
ଯଚ୍ଛତୁ ମୁକ୍ତିପଦଂ ବିମଦଂ ସୁଚିରଂ ରୁଚିରଂ ଶୁଭ ରୂପମ୍ ॥୮॥

ଋଷ୍ୟମୁକମଗମଦ୍ ରଘୁବୀରୋଲକ୍ଷ୍ମଣେନ ସହ ମାରୁତଜେନ ।
ତତ୍ର ସଖ୍ୟମଭବତ୍ ସୁଗ୍ରୀବେ ରାଘବସ୍ୟ ଦୃଢ଼ମଗ୍ନି ସମେତମ୍ ॥୫॥

ଋଷ୍ୟମୂକ ପର୍ବତ ରାମଲକ୍ଷ୍ମଣ ସହିତ ହନୁମାନ ହେଲେ ଉପଗତ ।
ସଖ୍ୟଭାବ ସଂବୋଧିତ ସୁଗ୍ରୀବ ରାମ ସହିତ ଋଷ୍ୟମୂକ ପାଦ ଆଗତ
ସେ ମିତ୍ରତା ବନ୍ଧନ,
ଅଗ୍ନି ସାକ୍ଷୀ ରକ୍ଷଣ ଆତ୍ମାରେ ଆତ୍ମମିଳନ ସୁଗ୍ରୀବ ଶ୍ରୀରାମ ଶରଣ ॥୫॥

ସପ୍ତତାଳାନୟଂ ଭିତ୍ୱା ବାଳିନଂ ବଳ ଶାଳୀନମ୍ ।
ସୁଗ୍ରୀବମ୍ ଭୂପତିଂ ଚକ୍ରେ ପୂର୍ଣ୍ଣାନନ୍ଦୋ ରଘୂତ୍ତମଃ ॥୬॥

ସପ୍ତତାଳ ତରୁଭେଦ ବାଳୀର ମୃତ୍ୟୁ ସଂଭେଦ ଶର ବିନ୍ଧିଲେ ବକ୍ଷୋପର ।
ପୂର୍ଣ୍ଣାନନ୍ଦ ରଘୁବୀର ବିକ୍ରମୀ ବାଳୀରାଜାର ନିଶେଷ କଲେ ପ୍ରାଣ ତାର ।
ସେ ରଘୁବୀର,
ବାଳୀ ରାଜା ସଂହାରୀ ସୁଗ୍ରୀବ ରାଜା କରି ବିଜୟେ କିଷ୍କିନ୍ଧ୍ୟାର ପୁର ॥୬॥

## ଅଥ ଗୀତଂ ସପ୍ତଦଶମ୍ - ୧୭

### ରାମକରୀ ରାଗଣେ - ରୂପକ ତାଳେନ

ସୁଗ୍ରୀବଃ ସ୍ୱଚିତ୍ତଂ ପ୍ରତି -

ଶ୍ରୀରାମ ନାମ ମନୋରମଂ ଭଜାମୃତ ତତ୍ତ୍ୱ ମୟମ୍ ।
ନ ତନୋତି ଯତ୍ ସ୍ମରଣେନ ଜନ୍ମ ଜରାଧି ମରଣଂ ଭୟମ୍ ॥୧॥

ସୁକୃତେଃ ପରଂ ପ୍ରକୃତେଃ ପରଂ ସତ୍ତ୍ୱାଦିଭାବଗତମ୍ ।
ବିଶ୍ରାମମେକମନୋ ଗିରାମଜଶଙ୍କରାଭି ମତମ୍ ।।୨।।

ପ୍ରହ୍ଲାଦ ନାରଦ ପୁଣ୍ଡରୀକ ପରାଶରାଦି ନୁତମ୍ ।
ସଂସାର ସାଗର ସୁପ୍ଲବଂ ମନ୍ତାର୍ଧ୍ୱ ମନ୍ତ୍ର ଯୁତମ୍ ।।୩।।

ଯଦି ଭଜସି ହରିମପି କେବଲଂ ହୃଦି କର୍ମଣା ବଚସା ।
ଯୋଗେନ କିଂ ଯଜ୍ଞେନ କିଂ ହ୍ୟପରେଣ କିଂ ତପସା ।।୪।।

ଉଦ୍ଗୀଥ ରମ୍ୟ ପଦକ୍ରମୋପନିଷତ୍ସୁଗୀତପରମ୍ ।
ଶବରୀ ଜଟାୟୁରଜାମିଳାଦିକତାପପାପହରମ୍ ।।୫।।

ରାଗାଦି ଦୂରମଶେଷ ମୁନିଜନ ସେବିତଂ ସତତମ୍ ।
ଲୋକାଭିରାମ ମମାନମାନ ସମଞ୍ଜସା ବିତତମ୍ ।।୬।।

ବ୍ରହ୍ମାଣ୍ଡ ସଂପୁଟ ରତ୍ନମୁଜ୍ଜ୍ୱଳ ମକଳମପ୍ରଳୟମ୍ ।
ସର୍ବାଶ୍ରୟଂ ସର୍ବାତିଗଂ ସର୍ବାର୍ତିହଂ ଚ ସମମ୍ ।।୭।।

ତୃଷ୍ଣା ନିବିଡ଼ ରଜନୀ ଦିବାକରମସୁରଯୂଥଭିଦମ୍ ।
ଶ୍ରୀଜୟଦେବ ଭାଷିତମଦ୍ଭୁତଂ ଭବ ସାରଭୂତ ମିଦମ୍ ।।୮।।

ସୁଗ୍ରୀବଃ କପିନିବହାନ୍ମହୀଧ୍ର ତୁଲ୍ୟାନ୍ ।
ସ୍ୱର୍ଣ୍ଣାଭାନ୍ନ୍ୟଖିଳ ଦିଶାସୁ ସଂସସର୍ଜ ।।
ସୀତାୟୈ ଲବଣ ପୟୋଧିମେତ୍ୟ ସର୍ବେ ।
ବିଚ୍ରେସୁ ସ୍ତରଳ ତରଂଗ ମାକଲୟ୍ୟ ।।୭।।

ସ୍ୱର୍ଣ୍ଣକାନ୍ତି ତୁଲ୍ୟ ବାନର ଭଲ୍ଲୁକ ସୁଗ୍ରୀବ ନିର୍ଦ୍ଦେଶ ମାନି ହେଲେ ।
ସୀତା ସତୀଙ୍କର ଖୋଜ ଅନ୍ୱେଷଣେ ଦିଗବିଦିଗ କ୍ଷେପିଲେ ବଳେ ।
ସେ ପ୍ରଭୁକାର୍ଯ୍ୟ ହେଲେ,
ଲବଣ ସାଗର କୂଳରେ ମିଳିଲେ ପ୍ରଭୁକାର୍ଯ୍ୟ ସଂପାଦିବା ଛଳେ ।।୭।।

ଜାମ୍ବବଦ୍ବଚନାତ୍ ସଦ୍ୟୋ ଗତ୍ୱା ଗିରିମନୁତ୍ତମମ୍ ।
ହନୁମାନତ୍ୱମତରତ୍ ସ୍ମୃତ୍ୱା ରାମାଂଘ୍ରି ପଂକଜମ୍ ।।୮।।

ମନ୍ତ୍ରୀ ଜାମ୍ବବାନ ନିର୍ଦ୍ଦେଶ ମାନିଣ ମଳୟ ପର୍ବତେ ହନୁମାନ ।
ରାମ ପଦାମ୍ବୁଜେ ଲୟ ରଖି ହୃଦେ ସ୍ମରଣ କରଇ ରାମନାମ ।
ସେ ସମୁଦ୍ର ଲଂଘିଣ,
ସୀତା ସତୀଙ୍କର ସନ୍ଧାନ କାର୍ଯ୍ୟରେ ନିୟୋଜିତ ହେଲେ ହନୁମାନ ॥୮॥

## ଅଥ ଗୀତଂ ଅଷ୍ଟାଦଶମ୍ - ୧୯

### ଦେଶାଖ୍ୟ ରାଗେଣ - ରୂପକ ତାଳେନ

ଲଙ୍କାପୁର ମବଲୋକ୍ୟ କରାଳମ୍ ।
ନାନାଭଙ୍ଗ ପରିପୂରିତ ଶାଳମ୍ ।
ସ୍ଖତ୍ୟ ବିଭୁଂ ବାତସୁଣେନ ଚକାର ଭୟମ୍ ॥୧॥

ବହୁବିଧ ଲୋହଯନ୍ତ୍ର ଶୃଗ ବାଣମ୍ ।
ଦୌବାରିକଧୃତ ପାଣିକୃପାଣମ୍ ॥୨॥

ରୁଚିର ନିକେତନ ତୋରଣ ମାଳମ୍ ।
ଭ୍ରାଜମାନ ମଣି ବିରଚିତ ଜାଳମ୍ ॥୩॥

ଶୁଭ ସୋପାନ ବାପିକା ରମ୍ୟମ୍ ।
ସୁରତରୁ ଭୂଷିତ ବିପିନ ମଗମ୍ୟମ୍ ॥୪॥

ସନ୍ତତ ମସୁର ନିକର ସଞ୍ଚାରମ୍
କୀଳିତ ଲୋକପାଳ ସୁର ଦାରମ୍ ॥୫॥

ତୁଂଗ କନକମୟ ସୌଧ ବିକାଶମ୍ ।
ମୟ ନିର୍ମିତ ମଗପତି ସଂକାଶମ୍ ॥୬॥

ଅତିଶୟ ରୁଚିର ଦେବବର ଗେହମ୍ ।
ଦେବ ବିନିର୍ମିତ ନିରୁପମ ଗେହମ୍ ॥୭॥

ଶ୍ରୀ ଜୟଦେବ ବିନିର୍ମିତ ଗାନମ୍ ।
ସୁଖୟତୁ ସାଧୁ ନିଚୟ ମନୁ ମାନମ୍ ॥୮॥

ତୀର୍ତ୍ୱାଂ କ୍ଷାରପୟୋନିଧିଂ କ୍ଷଣମୟୋ ଗତ୍ୱା ଶ୍ରିୟଃ ସନ୍ନିଧୌ ।
ଦତ୍ତ୍ୱା ରାଘବ ମୁଦ୍ରିକାମପଶୁଚଂକୃତ୍ୱା ପ୍ରବିଶ୍ୟାଟବୀମ୍ ॥
ଭଂକ୍ତ୍ୱାଽଶେଷ ତରୂନ୍ନିହତ୍ୟ ବହୁଶୋ ରକ୍ଷୋଗଣାଂସ୍ତତ୍ପୁରୀଂ ।
ଦଗ୍ଧ୍ୱାଽଦାୟ ମଣିଂରଘୂତ୍ତମମଗାଦ୍ବୀରୋହନୁମାନ୍ କପିଃ ॥୯॥

ପବନ ତନୟ ବୀର ହନୁମାନ କ୍ଷୀରସମୁଦ୍ରକୁ ଲଂଘି ହେଲେ
ସୀତାଙ୍କୁ ଶ୍ରୀରାମ ମୁଦ୍ରିକା ସମର୍ପି ମଧୁବନେ ପ୍ରବେଶିଲେ ବଳେ ।
ସେ ଯେ ପ୍ରଭୁବଳେ,
ମଧୁବନ ଭାଙ୍ଗି ଲଙ୍କାପୁର ଦାହି ରାକ୍ଷସ ନିଶେଷି ଫେରି ହେଲେ ॥୯॥

ଇତି ଶ୍ରୀମଦ୍ରାମ ଗୀତଗୋବିନ୍ଦାର୍ଥ ବିବର୍ଣ୍ଣନେ ଚତୁର୍ଥଃ ସର୍ଗଃ ॥





# ପଞ୍ଚମ ସର୍ଗଃ - ୫

ବର୍ଣ୍ଣିତ ବିଷୟ ବସ୍ତୁ –

ଶ୍ରୀରାମଙ୍କୁ ବାରମ୍ବାର ପ୍ରଣାମ ପୂର୍ବକ ମହୀସୁତାଙ୍କ ଦୁଃଖ ବର୍ଣ୍ଣନା । ସମୁଦ୍ର ପ୍ରତି କ୍ରୋଧ । ଜାମ୍ବବାନ, ସୁଗ୍ରୀବ, ଅଙ୍ଗଦ, ହନୁମାନ, ନଳ,ନୀଳ ପ୍ରଭୃତି ବାନର ଭଲ୍ଲୁକ ସେନାଙ୍କ ଦ୍ୱାରା ସେତୁବନ୍ଧ ନିର୍ମାଣ । ରାମେଶ୍ୱର ସେତୁବନ୍ଧ ପ୍ରତିଷ୍ଠା । ଲଙ୍କାକୁ ଯୁଦ୍ଧଯାତ୍ର । ସୁବଳ ପର୍ବତରେ ଅବସ୍ଥାନ, ପ୍ରବଳ ପ୍ରତାପୀ ବାନରସୈନ୍ୟ ଓ ଅସୁରଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ । ସାରଥି ମାତଳୀ ରଥରେ ଆରୋହଣ ପୂର୍ବକ ଶ୍ରୀରାମଙ୍କ ରାବଣକୁ ଯୁଦ୍ଧ ଆହ୍ୱାନ । ପର୍ବତସଦୃଶ ମହା ମହା ରାକ୍ଷସ, ମେଘନାଦ, କୁମ୍ଭକର୍ଣ୍ଣ ଓ ରାବଣ ଶ୍ରୀରାମଙ୍କ ବାଣରେ ନିହତ । ଲଙ୍କା ବିଜୟ, ଦେବକଣ୍ଟକ ରାବଣ ନିଧନ ସମ୍ବାଦ ଶୁଣି ଆକାଶରେ ଦେବଗଣ ଉପସ୍ଥିତ ହୋଇ ଶ୍ରୀରାମଙ୍କୁ ସ୍ତୁତି ପୂର୍ବକ ହର୍ଷନିର୍ଭର ମନରେ ଆକାଶରୁ ପୁଷ୍ପବୃଷ୍ଟି । ଲଙ୍କାରେ ଅସୁର ରାଜାରୂପେ ବିଭୀଷଣର ଅଭିଷେକ । ବିଭୀଷଣ, ଅସୁରକୂଳ ଓ ବାନର ସେନାଙ୍କୁ ପ୍ରବୋଧନା ପୂର୍ବକ ଅଯୋଧ୍ୟା ପ୍ରତ୍ୟାବର୍ତନ ନିର୍ଦ୍ଦେଶ ।

ପ୍ରଣନାମ ମୁହୁର୍ମୁହୁଃ କପିଃ କରୁଣା ସାଗରମ୍ ଅପାର ବିକ୍ରମଃ ।
ରଘୁନାଥ ମନାଥ ବତ୍ସଳଂ କଥୟାମାସ ମହୀସୁତାଦଶାମ୍ ॥୧॥

ଅପାର ବିକ୍ରମ କପିଶ୍ରେଷ୍ଠ ବୀର କରି ନମସ୍କାର ବାରମ୍ବାର ।
ଭକତ ବତ୍ସଳ ଶ୍ରୀରାମଙ୍କ ପାଶେ ବଖାଣିଲେ ଦୁଃଖ ପାରାବାର ।
ସେ ସତୀ ସୀତାଙ୍କର,
କରୁଣା ସାଗର ଶ୍ରୀରାମଙ୍କ ପାଦେ ଜାନକୀଙ୍କ ଦୁଃଖ ବାରମ୍ବାର ॥୧॥

# ଅଥ ଗୀତଂ ଏକୋନବିଂଶମ୍ - ୧୯

## ଦେଶରାଗେଣ - ରୂପକ ତାଳେନ

ରଜନୀଚର ରମଣୀ ପରିବୀତା ।
ବାଳଚନ୍ଦ୍ର କଳିକେବା ସଭୀତା ।
ନାଥ ହରେ ! ସୀଦତି ସୀତାଽଶୋକବନେ ॥୧॥ ଧ୍ରୁବପଦମ୍ ।

କୃଶ ଶରୀର ଗତିଃ ଅତିଶୟଦୀନା ।
ଭୂମି ଶୟ୍ୟାସନ ସଲିଳ ବିହୀନା ॥୨॥

ଧ୍ୟାୟତି ତବ ମୁଖଚନ୍ଦ୍ର ମୁଦାରମ୍ ।
ତ୍ୟଜତି ଭୁଜଗମିବ ମଣିମୟହାରମ୍ ॥୩॥

ଭଜତି ନିଶେଷ କିରଣମିବ ଜାଲମ୍ ।
ସ୍ପୃଶତି କରେଣ ମୁହୁ ର୍ନିଜ ଭାଲମ୍ ॥୪॥

କଳୟତି ଶରମିବ ମଳୟ ସମୀରମ୍ ।
ମୁଞ୍ଚତି ତପ୍ତ ବିଲୋଚନ ନୀରମ୍ ॥୫॥

ବିରହ ତୟା ବିଦଧାତି ନ ହାସମ୍ ।
ଜନୟତି ବହ୍ନିବିଷମ ନିଶ୍ୱାସମ୍ ॥୬॥

ରାମରାମ ରାମେତି ସକାମମ୍ ।
ବଦତି ବିଳାପତୟା ବସୁଯାମମ୍ ॥୭॥

ଶ୍ରୀଜୟଦେବ କବେରିଦ ମୁଦିତମ୍ ।
ସୁଖୟତୁ ରାମଭକ୍ତ ମତି ମୁଦିତମ୍ ॥୮॥

ପଦ୍ମାଷ୍ଟାଦଶ ସଂଖ୍ୟୟା ଧୃତରୟାଃ ପାଥୋଧି ଗମ୍ଭୀରୟା ।
ବର୍ଷାକାଳିକକାଳିକାନିବିଡ଼ୟା ଶାଖାମୃଗୀସେନୟା ॥
ସଂବୀତୋ ରଘୁନନ୍ଦନୋ ଜଳନିଧେସ୍ତୀରଂ ତରଙ୍ଗାକୁଳଂ ।
ଗତ୍ୱା ସେତୁମଥୋ ଚକାର ରୁଚିରଂ ପଶ୍ଚାଦ୍‌ଭବସ୍ଥାପନମ୍ ॥୨॥

ବର୍ଷା କାଳୀନ ମେଘଖଣ୍ଡଦୃଶା ଶ୍ରୀରାମ ବାନର ସୈନ୍ୟ ଘେନି ।
ଅଠର ପଦ୍ମ ସେନା ସମୁଦ୍ର ତରଂଗେ ସେତୁବନ୍ଧ ବାନ୍ଧିଥିଲେ ତହିଁ ।
ସେ ପ୍ରଭୁକାର୍ଯ୍ୟ ପାଇଁ,
ସେତୁବନ୍ଧ ତଟେ ଶିବଙ୍କୁ ସ୍ଥାପିଲେ ମଙ୍ଗଳ ବିଧାନ କାର୍ଯ୍ୟ ପାଇଁ ॥୨॥

## ଅଥ ଗୀତଂ ବିଂଶମ୍ - ୨୦

### ଗୁର୍ଜ୍ଜରୀରାଗେଣ - ରୂପକ ତାଳେନ

**ଲକ୍ଷ୍ମଣଃ ରାମଂ ପ୍ରତି -**

ପଶ୍ୟ ପଶ୍ୟ ରଘୁବର ବର ସେତୁମ୍ ।
ପରମ ଦୁରାସଦରୂପପୟୋନିଧି ସଲିଳ ବିଲଂଘନ ହେତୁମ୍ ॥୧॥

ଶୈଳ ନିବହ ମାନୀୟ ସୁମନମିବ ଶତଯୋଜନ ପରିମାଣମ୍ ।
ନାନାକାର ଶରୀର ବଳିମୁଖବୀର ବିହିତ ନିର୍ମାଣମ୍ ॥୨॥

ବାଳି ତନୟ ସୁଗ୍ରୀବ ବାୟୁସୁତ ନଳନୀଳାଦି ବିଚାରମ୍ ।
ଶଙ୍ଖ ଭୁଜଗ ତିମିମକର ଚକ୍ରକୂଳ ସଂକୁଳ ମତି ବିସ୍ତାରମ୍ ॥୩॥

ଅଂଜନ ନୀଳନୀରନିଧିମଧଗମୁଜ୍ଜ୍ୱଳ ଫେନ ବିକାରମ୍ ।
ଛାୟାପଥମିବ ଗଗନ ସମୁଦ୍ୟତମୁଡୁଗଣ ମିଳିତ ମୁଦାରମ୍ ॥୪॥

ରକ୍ଷମଲ୍ଲବହୁରାଜି ବିରାଜିତ ମିନ୍ଦୁକିରଣ ସମରୂପମ୍ ।
ଲଙ୍କା ବିଜୟ ପତ୍ର ମର୍ପିତମିବ ବିଧିନା ବିପୁଳ ମନୂପମ୍ ॥୫॥

ସିଦ୍ଧଯକ୍ଷ ବିଦ୍ୟାଧର କିନ୍ନର ସୁରବର ଲୋଚନ ଲୋଭମ୍ ।
ଯାତୁଧାନ ରମଣୀଜନ ଲୋଚନ ରୋଦନ ମଭିଗତମ ଶୋଭମ୍ ॥୬॥

ବାଳଖିଲ୍ୟା ବୈଖାନସ ଫେନ ପବନଚର ମୁନିକୃତ ଜାପମ୍ ।
ରାଜମାନ ରାକେୟ ଦୂରକୃତ ଦାରୁଣ ବନ୍ଧନ ପାପମ୍ ॥୭॥

ପଠତି ଜନଃ ସୁଚିରଂ ସୁମତି ର୍ଜୟଦେବ ବିନିର୍ମିତ ଗୀତମ୍ ।
ପଶ୍ୟତି ନୈବ କଦାଚିଦପି ପ୍ରତିବନ୍ଧକ ସଂସ୍କୃତିଭୀତମ୍ ॥୮॥

ତୀର୍ତ୍ତ୍ୱା ପାଥୋନିଧିଂ ରାମଃ ସସୈନ୍ୟଃ ପ୍ରତିଭାଷିତଃ ।
ଉଲ୍ଲଂଘ୍ୟ ଲଙ୍କା ମଗମତ୍ତ ସୁବେଳ ମଗସତ୍ତମମ୍ ।।୩।।

ସେତୁବନ୍ଧ ବାନ୍ଧି ରାମ ଦୟାନିଧି ଅଗାଧ ସମୁଦ୍ର ପାର ହୋଇ ।
ସୁବଳ ପର୍ବତେ କରି ଅବସ୍ଥାନ ରାବଣ ନିଧନ ମନେଧ୍ୟାୟୀ ।
ସେ ମନ୍ତ୍ରୀଗଣ ରାଇ,
ଭଲ୍ଲୁକ ବାନର ମର୍କଟ ସଇନେ ଆଶ୍ୱାସିଲେ ଯୁଦ୍ଧ ଡାକ ଦେଇ ।।୩।।

ଲଙ୍କାଂ ରୁରୋଧ ବଳିଭିଃ କପିଭିଃ ପ୍ରଭାବୀ
ରାମୋଽରବିନ୍ଦନୟନୋ ରଘୁବଂଶକେତୁଃ ।।
ଯୁଦ୍ଧଂ ବଭୂବ ତୁମୁଳଂ ହରିରାକ୍ଷସାନାଂ ।
ଶସ୍ତ୍ରାସ୍ତ୍ର ମୁଦ୍ଗର ଗିରିକ୍ଷିତିଜ ପ୍ରହାରମ୍ ।।୪।।

ରଘୁକୁଳ ଶ୍ରେଷ୍ଠ ରାମ ପଦ୍ମଅକ୍ଷ ବାନର ସେନା ଘେରାଉକରି ।
ଲଙ୍କାରେ ବାନର ଅସୁର ସହିତେ ନାନା ଅସ୍ତ୍ରଶସ୍ତ୍ରେ ଯୁଦ୍ଧକରି ।
ସେ ଯୁଦ୍ଧ ଭୟଙ୍କରୀ,
ନାନା ଅସ୍ତ୍ରଶସ୍ତ୍ର ପାହାଡ଼ ପର୍ବତ ବୃକ୍ଷ ଉତ୍ପାଟନେ ଅସ୍ତ୍ର ଧରି ।।୪।।

## ଅଥ ଗୀତଂ ମେକବିଂଶମ୍ - ୨୧

### ଶାବରୀ ରାଗେଣ - ରୂପକ ତାଳେନ

ଶୁକଃ ସାରଣଂ ପ୍ରତି -

ଲଙ୍କାପତିରାଲୋକୟ ଦିଶମ୍ ।
ଇନ୍ଦୀବର ସମ ରୁଚିର ବିଲୋଚନ ମରିମଦମୋଚନ କୀଶମ୍ ।।୧।।

ରାକାପତି ଶତକୋଟି ମଞ୍ଜୁମୁଖ ମନୁପମ ଚିବୁକ ଲସନ୍ତମ୍ ।
ଭୃକୁଟୀ କୁଟିଳ ବିଳାସତୟା ରତିନାୟକ ଚାପ ହସନ୍ତମ୍ ।।୨।।

କର କୋଦଣ୍ଡ ଶର ପ୍ରଭୟା ଲସମାନ ସମସ୍ତ ଶରୀରମ୍ ।
ଶକ୍ର ସମର୍ପିତ ବର୍ମଭୂତଂ ସମରାବ୍ଧି ବିଲଂଘନ ଧୀରମ୍ ।।୩।।

ବଦ୍ଧଜଟାମୁକୁଟଂ ନିବିଡ଼ଂ ରଜନୀଚର ନାଶନ ଦକ୍ଷମ୍ ।
ଚାରୁ ରଥସ୍ଥ ମୁଦଗ୍ର ପତାକମଖଣ୍ଡିତରୋଷବିପକ୍ଷମ୍ ।।୪।।

କାଳନୀୟ ପଶଭଂଖଳହଂ କଳହଂ କରଦାରୁଣମେତମ୍ ।
ମାତଳି ସାରଥି ସହିତ ମତ୍ତମହିତଳ ନବଲେନ ସମେତମ୍ ।।୫।।

ପରିକର କଟି ତୂଣୀର ବିଭୂଷିତ ମୁଦ୍ଗର ବାଣ କରାଳମ୍ ।
ଆକଂପିତ ତୁଳସୀଦଳ ସଂକୁଳ କୁସୁମ କଳିତ ବନମାଳମ୍ ।।୬।।

ତିଷ୍ଠ ବିମୂଢ଼ମତେ ସମରେ ଦଶକଣ୍ଠ ମିତି ପ୍ରବଦନ୍ତମ୍ ।
ପ୍ରସ୍ଫୁରିତାଧର ପଲ୍ଲବଯୁଗ ପ୍ରବିଭାସି ମନୋହର ଦନ୍ତମ୍ ।।୭।।

ଶ୍ରୀ ଜୟଦେବ ଭଣିତ ମତି ମଞ୍ଜୁଳ ରଘୁବର ସମର ବିଧାନମ୍ ।
ପଠତି ସମରଜୟ ମତିଶୟ ପୁରଜୟ ମେତି ମହାଭୟ ଦାନମ୍ ।।୮।।

ଜଘାନ ହୀମାନ୍ ଗିରିଶୃଙ୍ଗ ସନ୍ନିଭାନ୍ ମହାବଳାନ୍ମୁଦ୍ଗର ଶସ୍ତ୍ର ଯୋଧିନଃ ।
ଦଶାସ୍ୟ ମୁଗ୍ରଂ ଘନନାଦ ମୁଭଟଂ ଘଟ ଶ୍ରୁତିଂ ଚୈବ ତଥୈବ ରାମଃ ।।୫।।

ପର୍ବତ ଶୃଙ୍ଗ ସଦୃଶ ମହାମହା ରାକ୍ଷସ ଶ୍ରୀରାମ ବାଣେ ଗଲେ ଟଳି ।
କୁମ୍ଭକର୍ଣ୍ଣ ମେଘନାଦ ଆବର ଯୋଦ୍ଧା ପୁଙ୍ଗବ ରାବଣ ସହିତ ସେ ଟାଳି ।
ସେ ରଘୁରାଣ,
ମହାବଳୀ ଶ୍ରୀରାମ ଅସୁର କରି ନିଧନ ଲଙ୍କାପୁରକୁ ହେଲେ ଜିଣି ।।୫।।

ଜିତ୍ୱା ରିପୁଂ ରଘୁବରୋ ଦଶାଶ୍ୟ ଦେବ କଣ୍ଟକମ୍ ।
ଚକାଶେ ସୁଚିରଂ ତତ୍ର ଶାରଦେନ୍ଦୁ ରିବ ସ୍ଫୁଟମ୍ ।।୬।।

ଦେବଶତ୍ରୁ ରାବଣ କରି ତାର ନିଧନ ସାଧିଲେ ଦେବଙ୍କ କଲ୍ୟାଣ ।
ଶରଦ କାଳୀନ ଚନ୍ଦ୍ର ଦୃଶାରାମ ମକରନ୍ଦ ଦେବଙ୍କ ମଧେ ସେ ଅନିନ୍ଦ୍ୟ ।
ସେ ରଘୁରାଣ,
ଆକାଶ ଦିଶେ ଶୋଭାବନ ।।୬।।

## ଅଥ ଗୀତଂ ଦ୍ୱାବିଂଶମ୍ - ୨୨

### ବସନ୍ତ ରାଗେଣ - ରୂପକ ତାଳେନ

ଦେବାଃ ସ୍ତୁବନ୍ତି -

ଜୟ ରାମଚନ୍ଦ୍ର ମାୟାଽତିଦୂର ।
ରବିବଂଶ ବିଭୂଷଣ ମୁକୁଟଶୂର ॥୧॥ ଧ୍ରୁବପଦମ୍ ।

ବ୍ରହ୍ମାମହେନ୍ଦ୍ରଗନ୍ଧର୍ବଗୀତ ।
କଲ୍ୟାଣ ନିପୁଣ ଗୁଣ ଗଣ ବିନୀତ ॥୨॥

ଚଣ୍ଡ ପ୍ରୟାତ ଖଣ୍ଡିତ ବିରାଧ ।
ସ୍ୱର୍ଗାପବର୍ଗଦ ସରଦଗାଧ ॥୩॥

କରୁଣା ନିକେତତମ ପ୍ରବଳରୋଷ ।
ଭାବାଧିଗମ୍ୟ ଜିତ ସକଳାଦୋଷ ॥୪॥

ଧାରାଧର ପ୍ରତିମ ନୀଳଦେହ ।
ସଦ୍ରୂପବୋଧମୟମୋଦଗେହ ॥୫॥

ବ୍ୟାଳାଦପତ୍ର ଶତପତ୍ରନେତ୍ର
କୂଟସ୍ଥ ପାଣିତଳ କଳିତବେତ୍ର ॥୬॥

ସୀତାପତି ରଘୁପତି ଜୈନରନ୍ଧ୍ର ।
ବିଶସିତ ସମସ୍ତ ମାୟା ବିରୁଦ୍ଧ ॥୭॥

ଜୟଦେବ ବିନିର୍ମିତମେବ ରାମ ।
କୁରୁ ତେନ ନାଥ ମମହୃଦୟ ଧାମ ॥୮॥

ଇତି ରାମସ୍ତବଂ କୃତ୍ୱା ହର୍ଷନିର୍ଭର ମାନସାଃ ।
ଦେବାନଭସି ଯାନସ୍ଥା ବବୃଷୁଃ କୌସୁମଂ ଚୟମ୍ ॥୭॥

ରାମାଭିରାମଙ୍କ ସ୍ତୁତି କରି ଦେବତାମାନେ ନିର୍ଭର ଓ ହର୍ଷିତ ହୋଇ
ନିଜ ନିଜ ଯାନରେ ଆକାଶରେ ରହି ପୁଷ୍ପବୃଷ୍ଟି କରିଥିଲେ ॥୭॥

କୃତ୍ୱା ବିଭୀଷଣମଶେଷ ନିଶାଚରେଶଂ ।
ଲଙ୍କାପୁରେଽସୁରଭଟୈରୁପଶୋଭମାନେ ॥
ଅଗ୍ନୌ ବିଶୁଦ୍ଧ ଧରଣୀ ତନୟା ସମେତୋଽ
ଯୋଧ୍ୟାଂ ଯଯୌ ରଘୁପତିଃ କିଳ ପୁଷ୍ପକେଣ ॥୮॥

ରାକ୍ଷସ ରାଜାରୂପେ ବିଭୀଷଣଙ୍କୁ ଲଙ୍କେ ସିଂହାସନେ ବସାଇହେଲେ ।
ସୀତାଙ୍କୁ ଅଗ୍ନି ପରୀକ୍ଷା ପୁଷ୍ପକ ଯାନେ ଯାତ୍ରା ଅଯୋଧ୍ୟା ଫେରିବା ଚିନ୍ତିଲେ ।
ସେ ରଘୁନାଥ,
ବିଭୀଷଣେ ପ୍ରବୋଧି ବାନର ସେନା ସଂବୋଧି ପ୍ରସ୍ତୁତ ହେବା ଆଦେଶିଲେ ॥୮॥

ଇତି ଶ୍ରୀମଦ୍ରାମ ଗୀତଗୋବିନ୍ଦେ ମହାକାବ୍ୟେ ଶ୍ରୀ ଜୟଦେବ କୃତୌ ଲଙ୍କା ବିଜୟୋ ନାମ ପଞ୍ଚମଃ ସର୍ଗଃ ।





# ଷଷ୍ଠଃ ସର୍ଗଃ - ୬

ବର୍ଣ୍ଣିତ ବିଷୟ ବସ୍ତୁ -

ପୁଷ୍ପକ ବିମାନରେ ଅଯୋଧ୍ୟା ପ୍ରତ୍ୟାବର୍ତନ କାଳରେ ମାତା ସୀତାଙ୍କ ଠାରୁ ହନୁମାନର ମେଲାଣି । ବିନ୍ଧ୍ୟ ପର୍ବତ , ପାପନାଶିନୀ ଗଂଗା ଓ ଭରଦ୍ୱାଜ ଋଷିଙ୍କ ଆଶ୍ରମ ପ୍ରଦକ୍ଷିଣ ପୂର୍ବକ ଅଯୋଧ୍ୟା ପ୍ରତ୍ୟାବର୍ତନ । ସନ୍ତୁଷ୍ଟ ନୟନରେ ବଂଧୁ ପରିଜନ ମାନଙ୍କୁ ଦର୍ଶନ, ଭରତଙ୍କୁ ଆଲିଙ୍ଗନ, ଗୁରୁ ଗୁରୁଜନମାନଙ୍କୁ ପ୍ରଣାମ ପୂର୍ବକ ମାତୃଗଣଙ୍କୁ ସାକ୍ଷାତ,ସମ୍ଭାଷଣ । ଅଯୋଧ୍ୟା ସିଂହାସନ ଆରୋହଣ ଓ ରାମରାଜ୍ୟ ସ୍ଥାପନ ।

ଦଦର୍ଶ କାନନଂ ଭୂଧ୍ରଂ ଗଙ୍ଗାଂ ନାଶିତ କଲ୍ମଷାମ୍ ।
ଭରଦ୍ୱାଜଂ ବିଲୋକ୍ୟାଥ ପ୍ରାପ ସାକେତକଂ ହରିଃ ॥୧॥

କାନନ ଶୋଭାରାଜି ବିନ୍ଧ୍ୟପର୍ବତ ସାଜି ପାପନାଶିନୀ ଗଙ୍ଗାପୁଣ୍ୟ ।
ଭରଦ୍ୱାଦ ଆଶ୍ରମ କରିଣ ପ୍ରଦକ୍ଷିଣ ଅଯୋଧ୍ୟାପୁର ଆଗମନ ।
ସେ ରଘୁରାଣ,
ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପିତୃସତ୍ୟ ପାଳନ ଅବଧି କରି ପରିପୂର୍ଣ୍ଣ ॥୧॥

## ଅଥ ଗୀତଂ ତ୍ରୟୋବିଂଶମ୍ - ୨୩

### ଗୁଜ୍ଜରୀ ରାଗେଣ - ରୂପକ ତାଳେନ

ପଶ୍ୟତ ରାମଚନ୍ଦ୍ର ମତି ଶୋଭମ୍ ।
ବିଧି ହରିହର ଦୀନନାଥ ନାକପତିମୁନିଗଣ ମାନସ ଲୋଭମ୍ ॥୧॥

ନୀଳ ସକଳ ସନ୍ନିଭ ଶରୀର ରୁଚିଶୁକ୍ତିସୁବିଦ୍ରୁମ ହାରମ୍ ।
ବାମଭାଗ ସୀତା ଶୁଭଶୋଭିତ ମନୁଗତ ହରି ପରିବାରମ୍ ॥୨॥

ଭାନୁ ସମାନ ପୁଷ୍ପରଥ ସଂଗତ ମନୁଜ ସହିତ ମସୁରଘ୍ନମ୍ ।
ଚଣ୍ଡ ବିଶିଖ କୋଦଣ୍ଡ ବିନାଶିତ ସକଳ ଚରାଚର ବିଘ୍ନମ୍ ।।୩।।

ଭରତାଲିଙ୍ଗନ ଗୁରୁପାଦାମ୍ବୁଜ ପ୍ରଣତି ବିକଂପିତ ଭାଲମ୍ ।
ଦ୍ୱିଜନତି କରଣ ବିଧାନ ପରସ୍ପରପୃଚ୍ଛଂ ଚଳବନମାଳମ୍ ।।୪।।

ମାତୃଭବନ କୃତଗମନ ମନିନ୍ଦିତ ମଣୀମୟ ପୀଠ ନିବାସମ୍ ।
ଚାମର ଯୁଗଳ ସୀତା ତପବାରଣ ମଣ୍ଡିତ ମଞ୍ଜୁଳ ହାସମ୍ ।।୫।।

ହଂସ ଦୁକୂଳ ପୁଞ୍ଜମୁକୁଟ ପ୍ରଭୟା ପ୍ରତିଭାସି କପୋଳମ୍ ।
ନିଜଜନ ମୁପରି କୃପାମୟ ଶୁଭ୍ର କଟାକ୍ଷ ନିବେଶନ ଲୋଳମ୍ ।।୬।।

ବନ୍ଦିବେଷଧର ବେଦ ଚତୁଷ୍ଟୟ ବିହିତ ବିଜୟ ଗୁଣଗାଥମ୍ ।
କନକ ରତ୍ନମୟ ପାଣି ବିଶେଷ କୃତାଖିଳଲୋକସନାଥମ୍ ।।୭।।

ଶ୍ରୀ ଜୟଦେବ ବିନିର୍ମିତ ମତିଶୟରଘୁପତି ଚରିତ ମନୁପମ୍ ।
ହରି ଚରଣସ୍ୟ ତନୋତୁ ଶିବଂ ହୃଦି ମାନସହଂସ ସରୂପମ୍ ।।୮।।

ନିଜ ସରସିଜ ନେତ୍ରୈଃ ପାବୟିତ୍ୱା ସମସ୍ତଂ ।
ନିଜ ନିକର ମୁନିନ୍ଦ୍ରୈର୍ଜାନକୀ ପୂର୍ଷ୍ଣପାର୍ଶ୍ୱୈଃ ।।
ରଘୁପତି ରଥ ଶେତେ ତତ୍ପମଧ୍ୟେ ମନୋଜ୍ଞେ ।
ବିଶଦ ରୁଚିର ବର୍ଣ୍ଣ ସ୍ୱର୍ଣ୍ଣସୌଧେ ସୁଖେନ ।।୨।।

ପଦ୍ମଲୋଚନ ଆନନେ ବଂଧୁ ପରିବାର ଜନେ ଆନନ୍ଦେ କରି ଅବଲୋକନ ।
ମୁନି ଋଷିଗଣ ମଧ୍ୟେ ଜାନକୀ ସହ ଆନନ୍ଦେ ଅଯୋଧ୍ୟା ରାଜ ସିଂହାସନେ ।
ସେ ଅଯୋଧ୍ୟା ରାଜନ,
ରମ୍ୟ ସୁବର୍ଣ୍ଣ ପୁରେ ଅଯୋଧ୍ୟା ନଗରୀରେ ଆନନ୍ଦେ ବିତାଇଲେ ଦିନ ।।୨।।

## ଅଥ ଗୀତଂ ଚତୁର୍ବିଂଶମ୍ - ୨୪
### ଭୈରବୀ ରାଗେଣ - ଯତି ତାଳେନ

ପ୍ରାତଃ କାଳେ ବୈତାଳିକାଃ :-

ଜହିହି ଶୟନ ମରବିନ୍ଦ ବିଲୋଚନ ଖଗକେତୋ ।
କରୁଣା ପୁରିତ ଶୁଭନୟନେନ ବିଲୋକୟ ମଙ୍ଗଳ ହେତୋ ।।୧।।

ଉଦୟତି ଭାନୁରୟଂ ବିଧୁନା ସମମେତି ସମସ୍ତ ତମିସ୍ରମ୍ ।
ଦଧତି ନଭୋରୁଣ ତାମରୁଣେନ ବଭୂବ ସଦୋଜ ସମିଶ୍ରମ୍ ।।୨।।

ବିକସତି ପଦ୍ମବନଂ ସକଳଂବିହଗାବଳି ଦାତିନିନାଦମ୍ ।
ହଂସ ବିରାବ ବିବୋଧିତ ଚକ୍ରନିଚୟଗତ ସର୍ବ ବିଷାଦମ୍ ।।୩।।

ଦୀପ ଶିଖାତି ବିଶୁଦ୍ଧତରା ମଳିନତମୁପୈତି ବିଶାଳାମ ।
ସୀଦତି କୁମୁଦମୁଲ୍ଲକତତିଃ ପ୍ରତିଗଛତି ଲୟ ମୁଡୁମାଳାମ୍ ।।୪।।

କର୍ଷତି ଶୃଙ୍ଖଳକଂଗଜତା ଯୁଗଭାଗ ବିଭାଜିତ ନିଦ୍ରା ।
ନମତି ମହୀପସଭାଽଭିମୁଖଂ ତବ ରାଘବ ଦୂର ଦରିଦ୍ରା ।।୫।।

ଗାୟତି ସାମଖିଳାମଖିଳାମୃଷିରାଜିର ଖଣ୍ଡିତ ବୀଣା ।
ନୃତ୍ୟତି ଦେବବଧୂ ରୁଚିରାଯୁତଭାବଭରେଣ ନବୀଣା ।।୬।।

ଶୀତଳ ମନ୍ଦସୁଗନ୍ଧ ସମୀର ଗଳିତ କୁସୁମାବଳି ରେଖା ।
ପଠତି ପରସ୍ପରମେବ ପଟୁଃ ଶ୍ରୁତିପାଠମବାରିତବେଷା ।।୭।।

ଶ୍ରୀ କବିରାଜ ଶିରୋମଣିଦାମଳସଜ୍ଜୟଦେବ ବିଗୀତମ୍ ।
ମୋଦଭରଂ ସୁଜନସ୍ୟ ତନୋତୁ କରୋତୁ ମନୋରସନୀତମ୍ ।।୮।।

ଯଂ ଧ୍ୟାତ୍ୱା ସକୃଦେବ ଦେବ ମୁନୟୋ ଗଚ୍ଛନ୍ତି ସାଯୁଜ୍ୟକଂ ।
ମୋକ୍ଷ ସ୍ତୋତ୍ରମୁପୈତି ଯତ୍ରବଚନଂ ସଂକୀର୍ତ୍ତ୍ୟମାନଂ ସତାମ୍ ।।
ଯନ୍ନାମ ସ୍ମରଣାନ୍ନରୋଽଖିଳମଙ୍ଗ ତୀର୍ତ୍ତ୍ୱା ବିଶୁଦ୍ଧୋ ଭବେ-
ତ୍ତଂ ଦେବଂ ପ୍ରଣମାମି ନିତ୍ୟମମଳଂ ସୂକ୍ଷ୍ମଂ ପ୍ରକୃତ୍ୟାଃ ପରମ୍ ।।୩।।

ଯା'ର ଧ୍ୟାନ କରି ମୁନିଋଷିଦେବ ସାଯୁଜ୍ୟ ମୁକ୍ତି ଲଭନ୍ତି ।
ସାଧୁ ଜନେ ଯା'ର ଗୁଣକୀର୍ତ୍ତିରାଜି ସ୍ମରଣେ ନିଷ୍ପାପ ହୋନ୍ତି ॥
ସେ ନିତ୍ୟ ପବିତ୍ର ସୂକ୍ଷ୍ମ ସ୍ଥୂଳବ୍ରହ୍ମ ପ୍ରକୃ ପରେ ଯାର ସ୍ଥିତି ।
ସେହି ପରାତ୍ପର ବ୍ରହ୍ମ ଶ୍ରୀରାମଙ୍କ ପାଦପଦ୍ମେ ରହୁ ରତି ॥

ଶ୍ରୀମଦ୍ୱିଦେହନୃପ ଦେଶବିଶେଷ ବାସୋ
ନିଃଶେଷ ଭୂମି ପ୍ରତିମଣ୍ଡଳ ମାନନୀୟଃ ।
ଏତଚ୍ଚକାର ବରଗାନ ରସ ପ୍ରଧାନଂ
କାବ୍ୟଂ କବି ପ୍ରବର ମୌଳିବିଭୂଷଣଂ ସତ୍ ।।୪।।

ଅଯୋଧ୍ୟାଧିପତି ହେଲେ ହେଁ ଶ୍ରୀରାମ ଭୂଖଣ୍ଡର ଚକ୍ରବର୍ତ୍ତୀ ।
ସର୍ବ ମାନ୍ୟଗଣ୍ୟ ଅଗ୍ରଗଣ୍ୟ ନୃପ ଅକ୍ଷୟ ଯାହାଙ୍କ କୀର୍ତ୍ତି ॥
ସେ କରୁଣାକର ଗୁଣ କୀର୍ତ୍ତି ଗାନ ରସମୟ କାବ୍ୟ କୃତି ।
ସନ୍ଥ ସମାଜର ଗଳାର ଭୂଷଣ ହେଉ ଘେନ ମୋ ବିନତି ।।୪।।

ଶ୍ରୀମଦ୍ରାମାୟଣ କ୍ଷୀରସାଗରାନ୍ ମନ୍ଦରୋପମଃ ।
ଜୟଦେବୋ ରାମଗୀତଗୋବିନ୍ଦଂ ରତ୍ନମାକରୋତ୍ ।।୫।।

ରାମାୟଣ କ୍ଷୀର ସାଗରୁ ସମ୍ଭୂତ ମନ୍ଦରଗିରି ଦଣ୍ଡର ସମା ।
କବି ଜୟଦେବ କାବ୍ୟ କଳାକୃତି ମଣିରତ୍ନ ଅବା କି ଉପମା ।
ସେ ଶ୍ରୀରାମ ଚରିତ,
ରାମ ଗୀତଗୋବିନ୍ଦେ ସଂକ୍ଷେପି ବର୍ଣ୍ଣିଲେ ପୁଣ୍ୟ ରାମାୟଣ କଥାଗୀତ ॥

ଇତି ଶ୍ରୀମଦ୍ରାମଗୀତଗୋବିନ୍ଦେ ମହାକାବ୍ୟେ ଶ୍ରୀଜୟଦେବ କୃତୌ
ରାମାଭିଷେକୋ ନାମ ଷଷ୍ଠଃ ସର୍ଗଃ ॥

ମଙ୍ଗଳ ମସ୍ତୁ



# *Ramagitagivinda* of Kaviraj Jayadev: as depicted in the stone panels of Barahi Temple, Chaurasi




By Sj. Hansanath Sahoo
Sr. Researcher, Prachi Sanskruti.
Adaspur, Cuttack



1. Basistha – Dasaratha Bichar Bimarsha

## ଦଶରଥ ବଶିଷ୍ଠ ବିଚାର ବିମର୍ଶ -

ପ୍ରତ୍ୟୁବାଚ କୁଳାଚାର୍ଯ୍ୟଂ ବଶିଷ୍ଟଂ ମୁନିପୁଙ୍ଗବମ୍
ରାଘବାୟ ପୁରୋରାଜ୍ୟଂ ଦେହି ମହ୍ୟଂ ତପୋବନମ୍ ।। ୩/୧୧
ଶ୍ରୁତ୍ୱା ନୃପୋ ଦଶରଥୋ ବଚନଂ ମହିଷ୍ୟାଭିନ୍ନୋ ବଭୂବ ହୃଦୟେ କରୁଣାବତାରଃ ।
ରାମଂ ମହେନ୍ଦ୍ର ମଣିସୁନ୍ଦର ଦେହକାନ୍ତି ମାହୂୟ କାନନ ଗମାୟ ସମାଦିଦେଶ ।। ୩/୧୨



2. Rama Laxman and Sita's Bana Gamana

## ଶ୍ରୀରାମଙ୍କ ବନଗମନ

ବୈଦେହୀ ସହଜାନୁଜୋ ରଘୁବରୋ ଧୃତ୍ୱା ଜଟାବଲ୍କଳଂ ।
ନତ୍ୱା ଭୂପତି ମାଦ୍ରାଦନୁ ଯଯୌତଚ୍ଛୃଙ୍ଗବେରଂ ପୁରମ୍ ।। ୩/୧୩



**3. Maya Maricha Nidhana**

## ମାରୀଚ ନିଧାନ

ରାବଣ ଶାସନ କନକ ହରିଣ ମାରୀଚ ନିପାତ ନିଧାନମ୍ । ଗୀ ୧୬/୫



**4. Jatayu Sakhyata & Hanumana Sakhyata**

## ଜଟାୟୁ ସାକ୍ଷାତ

ସୀତା ହରଣ ବିଳାପନ ଗୃଧ୍ର ବିଲୋକନ ସଂଗତି ଦାନମ୍ ॥ ଗୀ -୧୬/୫
ଋଷ୍ୟମୂକମଗମଦ୍ ରଘୁବରୋ ଲକ୍ଷ୍ମଣେନ ସହ ମାରୁତ ଜେନ ॥ ୪/୫



**5. Ramanka Saptatala Bheda – Bali Badhha**

## ସପ୍ତତାଳ ଭେଦବାଳୀବଧ

ସପ୍ତ ତାଳାନୟଂ ଭିତ୍ୱା ବାଳିନଂ ବଳଶାଳିନମ୍
ସୁଗ୍ରୀବଂ ଭୂପତିଂଚକ୍ରେ ପୂର୍ଣ୍ଣାନନ୍ଦୋ ରଘୂତ୍ତମଃ ॥ ୪/୬



**6. Sugriva Abhiseka**

ସୁଗ୍ରୀବଂ ଭୂପତିଂଚକ୍ରେ ପୂର୍ଣ୍ଣାନନ୍ଦୋ ରଘୂତ୍ତମଃ ॥ ୪/୬



7. Hanumananka Sitanku Sandhan

## ହନୁମାନ ସୀତାଙ୍କୁ ସଂଧାନ, ସାକ୍ଷାତ

ତୀର୍ତ୍ୱା କ୍ଷାର ପୟୋନିଧିଂକ୍ଷଣମୟୋ ଗତ୍ୱା ଶ୍ରିୟଃ ସନ୍ନିଧୌ ।



8. Hanumanara Sitanku Mudrika Pradana

## ମୁଦ୍ରିକା ପ୍ରଦାନ

ଦତ୍ତ୍ୱା ରାଘବ ମୁଦ୍ରିକା ମପଶୁଚଂ କୃତ୍ୱା ପ୍ରବିଶ୍ୟାଟବୀମ୍ ।।
ଭଙ୍କ୍ତ୍ୱାଽଶେଷ ତରୂନ୍ନିହତ୍ୟ ବହୁଶୋରକ୍ଷୋଗଣାଂ ସ୍ତତ୍ ପୁରୀମ୍ ।
ଦଗ୍ଧ୍ୱାଽଦାୟ ମଣିଂ ରଘୂତ୍ତମ ମଗାଦ୍ଧବୀରୋ ହନୂମାନ୍ କପିଃ ।। ୪/୯



**9. Hanumananka landudarae Agni Sanjoga Bele Tankara Ramanku Smaran**

ଦଗ୍ଧ୍ୱାଽଦାୟ ମଣିଂ ରଘୂତ୍ତମ ମଗାଦ୍‌ଧବୀରୋ ହନୂମାନ୍ କପିଃ ।। ୪/୯



**10. Hanumanara Ramanku Sitanka Sandesha Samudraprati Krodhha**

## ରଘୁନାଥଙ୍କୁ ସଂଦେଶ – ସମୁଦ୍ର ପ୍ରତିକ୍ରୋଧ

ପ୍ରଣନାମ ମୁହୁର୍ମୁହୁଃ କପିଃ କରୁଣାଗାରମାପାର ବିକ୍ରମଃ ।
ରଘୁନାଥ ମନାଥ ବତ୍ସଳଂ କଥୟାମାସ ମହୀସୁତା ଦଶାମ୍ ।। ୫/୧
ସଂବୀତୋ ରଘୁନନ୍ଦନୋଜ୍ଜଳନିଧେ ସ୍ତୀରଂ ତରଙ୍ଗାକୁଳମ୍ ।। ୫/୨



**11. Setubandha Nirmana**

## ସେତୁବଂଧ ନିର୍ମାଣ

ଅଂଜନ ନୀଳ ନୀରନିଧିମଧ ଗମୁଜ୍ୱଳ ଫେନ ବିକାରମ୍ ।
ଛାୟାପଥମିବ ଗଗନ ସୁମୁଦ୍ୟତା ମୁଡଗଥା ମିଳିତ ମୁଦାରମ୍ ॥ ୪/୨୦



ଶୈଳ ନିବହ ମାନୀୟ ସୁମନମିବ ଶତଯୋଜନ ପରିମାଣମ୍ ।
ନାନାକାର ଶରୀର ବଳୀ ମୁଖବୀର ବିହିତ ନିର୍ମାଣମ୍ ॥ ୨/୨୦



**12. Rameswar Setubandha Pratistha**

## ସେତୁବଂଧ ପ୍ରତିଷ୍ଠା

ସଂବୀତୋ ରଘୁନନ୍ଦନୋ ଜଳନିଧେ ସ୍ତୀରଂ ତରଙ୍ଗା କୁଳମ୍ ।
ଗତ୍ୱା ସେତୁମଥୋ ଚକାର ରୁଚିରଂ ପଷ୍ଚାଦ୍ ଭବ ସ୍ଥାପନମ୍ ॥ ୫/୨



**13. Jambaban O Anya Banaranka Lankaku Yudha Jatra**

ବାଳୀତନୟ ସୁଗ୍ରୀବ ବାୟୁସୁତ ନଳନୀଳାଦି ବିଚାରମ୍ ।
ଶଙ୍ଖଭୁଜଗ ତିମି ମକର ଚକ୍ରକୁଳ ସଂକୁଳ ମତି ବିସ୍ତାରମ୍ ॥ ୩/୨୦
ଅଂଜନ ନୀଳ ନୀରନିଧି ମଧ ଗମୁଜ୍ଜ୍ୱଳ ଫେନ ବିକାରମ୍ ।
ଛାୟାପଥମିବ ଗଗନ ସମୁଦ୍ୟତ ମୁଡୁଗଣା ମିଳିତ ମୁଦାରମ୍ ॥ ୪/୨୦



**14. Lankaku Yudhayatra**

## ଲଙ୍କାକୁ ଯୁଦ୍ଧଯାତ୍ରା

ତୀର୍ତ୍ତ୍ୱା ପାଥୋନିଧିଂ ରାମଃ ସସୈନ୍ୟଃ ପ୍ରତିଭାସିତଃ ।
ଉଲ୍ଲଂଘ୍ୟ ଲଙ୍କାମଗମତ୍ ସୁବେଳ ମଗସତ୍ତମମ୍ ॥ ୫/୩
ଲଙ୍କାଂ ରୁରୋଧ ବଳିଭିଃ କପିଭିଃ ପ୍ରଭାବୀ ।
ରାମୋଽରବିନ୍ଦ ନୟନୋ ରଘୁବଂଶ କେତୁଃ ॥



**15. Banara-Asura Yudhha**

## ବାନର ଅସୁର ଯୁଦ୍ଧ

ଯୁଦ୍ଧଂ ବଭୂବ ତୁମୁଳଂ ହରି ରାକ୍ଷସନାମ୍ ।
ଶସ୍ତ୍ରାସ୍ତ୍ର ମୁଦ୍ଗର ଗିରି କ୍ଷିତିଜ ପ୍ରହାରମ୍ ॥ ୫/୪



16. Yudhha - Banara Asura

ଯୁଦ୍ଧଂ ବଭୂବ ତୁମୁଳଂ ହରି ରାକ୍ଷସାନାମ୍ ।
ଶସ୍ତ୍ରାସ୍ତ୍ର ମୁଦ୍ଗର ଖିରି କ୍ଷିତିଜ ପ୍ରହାରମ୍ ।। ୫/୪



17. Yudhha - Banara Asura

ଶସ୍ତ୍ରାସ୍ତ୍ର ମୁଦ୍ଗର ଗିରି କ୍ଷିତିଜ ପ୍ରହାରମ୍ ।। ୫/୪



**18. Yudhha**

ଯୁଦ୍ଧଂ ବଭୂବ ତୁମୁଳଂ ହରି ରାକ୍ଷସାନାମ୍ ।। ୫/୪



**19. Yudhha**

ଯୁଦ୍ଧଂ ବଭୂବ ତୁମୁଳଂ ହରି ରାକ୍ଷସନାମ୍ ।। ୫/୪



**20. Kumbhanarnara Nidra Bhagna**

## କୁମ୍ଭକର୍ଣ୍ଣ ଯୁଦ୍ଧ - ବଧ

ଜଘାନହୀମାନ୍ ଗିରିଶୃଙ୍ଗ ସନ୍ନିଭାନ୍ ମହାବଳୀନ୍ ମୁଦ୍‌ଗରଶସ୍ତ୍ର ଯୋଧିନଃ ।
ଦଶାସ୍ୟ ମୁଗ୍ରଂ ଘନନାଦ ମୁଭଟଂ ଘଟଶ୍ରୁତିଂ ଚୈବ ତଥୈବ ରାମଃ ॥ ୫/୫



**21. Hanumana - Ravana Yudhha**



**22. Yudhha - Banara Meghanada**

ଦଶାସ୍ୟ ମୁଗ୍ରଂ ଘନନାଦ ମୁଭଟଂ ଘଟଶ୍ରୁତିଂ ଚୈବ ତଥୈବ ରାମଃ ॥ ୫/୫



**23. Yudhha**



**26. Rama Ravana Yudhha**

ଜିତ୍ୱାରିପୁ ରଘୁବରୋ ଦଶାସ୍ୟ ଦେବ କଣ୍ଟକମ୍ ।। ୫/୬



**27. Debagananka Puspa Brusti**

## ଦେବଗଣଙ୍କ ପୁଷ୍ପବୃଷ୍ଟି

ଜିତ୍ୱାରିପୁଂ ରଘୁବରୋ ଦଶାସ୍ୟ ଦେବ କଂଟକମ୍ ।
ଚକାଶେ ସୁଚିରଂ ତତ୍ର ଶାରଦେନ୍ଦୁରିବ ସ୍ଫୁଟମ୍ ।।୫/୬
ଇତି ରାମସ୍ତବଂ କୃତ୍ୱା ହର୍ଷ ନିର୍ଭର ମାନସାଃ ।
ଦେବା ନଭସି ଯାନସ୍ଥା ବବୃଷୁଃ କୌସୁମଂ ଚୟମ୍ ।। ୫/୭



28. Bibhisana Abhiseka

## ବିଭୀଷଣ ଅଭିଷେକ

କୃତ୍ୱା ବିଭୀଷଣ ମଶେଷ ନିଶାଚରେଶଂ ।
ଲଙ୍କାପୁରେଃସୁରଭଟୈରୁପ ଶୋଭମାନେ ॥



29. Ramanka Banaranku Prabodhana

ନିଜ ସରସିଜ ନେତ୍ରୈଃ ପାବୟିତ୍ୱା ସମସ୍ତଂ ॥ ୬/୨



**30. Hanumananku Sriramanka Prabodhana**

ହନୁମାନକୁ ଶ୍ରୀରାମଙ୍କ ପ୍ରବୋଧନା



**31. Ramaabhiseka**

## ରାମାଭିଷେକ

ନିଜ ସରସିଜ ନେତ୍ରୈଃ ପାବୟିତ୍ୱା ସମସ୍ତଂ
ନିଜ ନିକର ମୁନୀନ୍ଦ୍ରୈଃ ଜାନକୀ ପୂର୍ଣ୍ଣ ପାର୍ଶ୍ୱଃ ॥
ରଘୁପତି ରଥଶେତେ ତକ୍ଷମଧ୍ୟେ ମନୋଜ୍ଞେ ।
ବିଶଦ ରୁଚିରବର୍ଣ୍ଣ ସ୍ୱର୍ଣ୍ଣସୌଧେ ସୁଖେନ ॥ ୬/୨








**ହଂସନାଥ ସାହୁ**

ପ୍ରାଚୀ ସଂସ୍କୃତି ଗବେଷକ, ଅଡ଼ଶପୁର

ଯୋଗାଯୋଗ : ୯୯୩୭୯୩୮୮୪୮


ଶ୍ରୀଯୁକ୍ତ ହଂସନାଥ ସାହୁଙ୍କ ଜନ୍ମ କଟକ ଜିଲ୍ଲା, ଗୋବିନ୍ଦପୁର ଥାନା ଅଲିଙ୍ଗ ଗ୍ରାମ । ସଂପ୍ରତି ଅଡ଼ଶପୁର ବଜାର ଶ୍ରୀ ଶ୍ରୀ ମାଧବାନନ୍ଦ ଜୀଉଙ୍କ ପ୍ରତିବେଶୀ ଭାବରେ ନିବାସୀ । ଜୀବନର ପ୍ରଭୂତ ସମୟ ଶିକ୍ଷକତା, ସଂଗଠନ ତଥା ସମାଜ ସେବାରେ ବିନିଯୋଗ କରି ବିଭିନ୍ନ ଶିକ୍ଷାନୁଷ୍ଠାନ, ମଠ, ମନ୍ଦିର ପ୍ରଭୃତିର ପୁନରଦ୍ଧାର କାର୍ଯ୍ୟ କରିଛନ୍ତି । କଟକ ଜିଲ୍ଲା, କଣ୍ଟାପଡ଼ା ବ୍ଲକ ଅନ୍ତର୍ଗତ ଅଡ଼ଶପୁରର ଉଦୟନାଥ ବିଜ୍ଞାନ ଓ ବୈଷୟିକ ମହାବିଦ୍ୟାଳୟର ପ୍ରତିଷ୍ଠାତା ସମ୍ପାଦକ ଦାୟିତ୍ୱ ଦୀର୍ଘ ବର୍ଷ ଧରି ସୁପରିଚାଳନା କରିଛନ୍ତି । ବର୍ତ୍ତମାନ ଅଡ଼ଶପୁର ଜୟଦେବ ସାଂସ୍କୃତିକ ସଂସଦର ସଭାପତି, ଜୟଦେବ ପାଲାକାର ପରିଷଦର ସ୍ଥାୟୀ ସଭାପତି, ପ୍ରାଚୀ ସଂସ୍କୃତି ଗବେଷଣା କେନ୍ଦ୍ର, ଅମରେଶ୍ୱରର ସଭାପତି ଓ ପଲ୍ଲୀ ଭାରତୀ ସାରସ୍ୱତ ସାଂସ୍କୃତିକ ପରିଷଦର ସଭାପତି ଭାବେ କାର୍ଯ୍ୟରତ । ତାଙ୍କ ରଚିତ ପ୍ରାଚୀ ମାହାତ୍ମ୍ୟ, ଜୟଦେବ ଓ ଉତ୍କଳୀୟ ସଂସ୍କୃତି, ଗୀତଗୋବିନ୍ଦର କାବ୍ୟଧାରା, ପ୍ରାଚୀସ୍ମୃତି କଳିକା, ତୁଳସୀ ମାହାତ୍ମ୍ୟ, ପ୍ରାଚୀତୀର୍ଥ ପ୍ରଭୃତି ଉପାଦେୟ ପୁସ୍ତକ । ପ୍ରାଚୀ ସଂସ୍କୃତି ଆଧାରିତ ପୁସ୍ତକ ପ୍ରକାଶନ ଅପେକ୍ଷାରେ ନିରନ୍ତର ଚେଷ୍ଟିତ । ପ୍ରାଚୀ କ୍ଷେତ୍ରର ବିରଳ ସ୍ଥାପତ୍ୟରାଜି ଆଧାରିତ, "The Exploration of the Heart and Sole of Prachi Valley" ବର୍ତ୍ତମାନ ଯନ୍ତ୍ରସ୍ଥ । ବର୍ତ୍ତମାନ ପ୍ରାଚୀ ସଂସ୍କୃତିର ଉନ୍ମୋଚନ ତଥା ପୁନରଦ୍ଧାର କାର୍ଯ୍ୟରେ ଉତ୍ସର୍ଗୀକୃତ ।

ପ୍ରକାଶକ